# ହାରଜିତ୍



ଜନସଂଖ୍ୟା ଶିକ୍ଷା ବିଭାଗ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡିଶା

ଭୁବନେଶ୍ୱର

# ହାରଜିତ୍



ଜନସଂଖ୍ୟା ଶିକ୍ଷା ବିଭାଗ

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ହାରଜିତ୍

## ଶ୍ରୀମତୀ ବସନ୍ତଲତା ପଟ୍ଟନାୟକ

ଦିନ ଘଡ଼ିଏ ସରିକି ହବ। ବାସିପାଇଟି ସାରୁ ସାରୁ ଡେରି ହେଲାଣି ମାଣିକର। ଝିଅ ରମା ଅନିସା କରିଛି ବୋଉକୁ। ବୋଉ ସାଙ୍ଗରେ ଗାଧୋଇ ଯିବ।

ଗଉରୀ, ସଉରୀ, କେତକୀ ଆଉ ସପନି ହେରିକା କେତେବେଳୁ ବନ୍ଧକୁ ଯିବେଣି। ମାଛପରି ପାଣିରେ ପହଁରୁଥିବେ ସଭିଏଁ। କାଲି ସପନି ତାକୁ ଚିତ୍ ପହଁରାରେ ଟପି ଯାଇଥିଲା। ଆଜିକୁ ବାଜି ପଡ଼ିଛି। ତା' ମନ କହୁଛି ସେ ନିଶ୍ଚେ ଜିତିବ।

ଆଗେ ଚଟା ଖେଳରେ ସପନି ଆଉ ସଉରୀ ସବୁବେଳେ ହାରୁଥିଲେ। ଏବେ ଚଟା ଖେଳୁ ନାହାନ୍ତି। ଗତ ସନ ଭାଲୁକୁଣୀ ପୂଜାବେଳକୁ ବାଜି ପଡ଼ିଥିଲା। ପୋଖରୀର ସବୁ କଇଁଫୁଲ ସେ ନେଇ ଆସିବ। ରାତି ଦି'ଘଡ଼ି ଥାଉ ଥାଉ ଗଉରୀ, କେତକୀ ଆଉ ରମା ଯାଇ ସବୁ ଫୁଲ ନେଇ ଆସିଥିଲେ। ସପନି ହେରିକା ଗଲାବେଳକୁ ପୋଖରୀ ବିଲ୍‌କୁଲ୍ ଫାଙ୍କା। ଲୁଡୁ ଖେଳରେ ତ ଗଉରୀ ଆଉ ସେ ସପନି ଆଉ ସଉରିକୁ ସବୁବେଳେ ହରାନ୍ତି। ଆଜି ନିଶ୍ଚେ ସେ ଜିତିବ।

ଦାନ୍ତକାଠି ଖଣ୍ଡେ ଜାକି ମଇଳା ଲୁଗା ଦି'ଖଣ୍ଡ କୁଣ୍ଢେଇ ରମା ବୋଉ ସାଙ୍ଗରେ ବାହାରିଗଲା। ବନ୍ଧ ଉପରୁ ଦେଖିଲା ସାଙ୍ଗମାନେ ସମସ୍ତେ ପାଣିରେ ପଶିଛନ୍ତି। ପଥର ଉପରେ ଲୁଗାତକ ଥୋଇ ଭୁଷ୍‌କିନା ପାଣି ଭିତରକୁ ପଶିଗଲା। ମାଛପରି ପହଁରି ଚାଲିଲା ଆଗକୁ।

ସାବି ଆଈ। ଗାଁଟା ଯାକର ଆଈ। ଗାଧୋଇ ସାରି ଦିଅଁଙ୍କୁ ପାଣି ଟେକୁଥିଲେ। ତାଙ୍କ ମୁହଁରେ ପାଣି ଛିଟିକା ପଡ଼ିଲା। ଆଉ କି ସମ୍ଭଳା ପଡ଼ନ୍ତି ସେ! ରାଗରେ ପାଟି କଲେ- ''ଦିଅଁଦେବତାଙ୍କୁ ସୁସ୍ଥିରେ ପାଣି ଟିକେ ଟେକିବାକୁ ଦଉନାହାନ୍ତି ଲୋ ମା'। କେଡ଼େ ଉତୁରୁଛନ୍ତି ଏ ଟୋକାଟୋକିଗୁଡ଼ାକ! ବଡ଼ ସାନ ମାନୁ ନାହାନ୍ତି। ଦଇବ ସହିବ ନାହିଁ ଏଗୁଡ଼ାଙ୍କୁ।''

ରାଧାନାନୀ, ଏ ସାହିର ଝିଅ, ସେ ସାହିର ବୋହୂ ହୋଇଛି। ସାବି ଆଈକୁ ପିଲାଦିନୁ ଦେଖିଛି, ଚିହ୍ନିଛି। କହିଲା- ''ତୁଚ୍ଛାଟାରେ ପିଲାଗୁଡ଼ାଙ୍କୁ ଏମିତି କଅଣ କହୁଛ ଆଈ! ଏଇଟା ତ ସେମାନଙ୍କର ଖେଳାବୁଲା ବେଳ। ଏବେ ସେମାନେ ଗଛରେ ଚଢ଼ିବେ, ପାଣିରେ ବୁଡ଼ିବେ। ମନ ହଉଥିବ ଆକାଶରେ ଉଡ଼ିବେ। ଏ ପିଲାବେଳ କ'ଣ ଆଉ ଫେରି ଆସିବ ?''

କଟାଘା'ରେ ଚୂନଛିଟା ପଡ଼ିଗଲା। ଆଈ କହିଲେ- ''କ'ଣ କହିଲୁ, ଏମାନେ ପିଲା। ମା' କ୍ଷୀର ଖାଉଛନ୍ତି। ଏ ଗୁଡ଼ାଙ୍କୁ ୧୦/୧୧ ବର୍ଷ ନେଖା ହବଣି। ମୁଁ ପରା ଦଶ ବରଷରେ ବାହା ହୋଇଥିଲି। କାଉ କା' ନ କରୁଣୁ ଗାଧୋଇ ପାଧୋଇ ଘରକଣରେ ପଶେ। ବାସି ବିଛଣାକୁ ଆଉ ଯିବାକୁ ଚାରା ନ ଥାଏ। ବସି ବସି ଖାଲି ଢୁଳାଏ। ସେମିତି ଶୋଇପଡ଼େ। ମାଇପି କୁଣିଆଁ କେହି ଆସିଗଲେ ବଡ଼ଯା' ଆଗତୁରା ଆସି ମତେ ଉଠେଇ ଦିଅନ୍ତି। ମୁଁ ଠେଙ୍ଗା ହେଇ ବସେ। ଆଉ ଏମାନେ ପିଲା ହେଇଛନ୍ତି ? ଦେଖୁନୁ ସେ ରମାକୁ। କେମିତି କାତମାରି ପହଁରୁଛି।

ସଭିଏ ମିଶି ନଈପାଣିକୁ ଉଠଉଛନ୍ତି ଆଉ ପକଉଛନ୍ତି। ଲାଜ ନାହିଁ ଏଗୁଡ଼ାଙ୍କ ମୁହଁକୁ।''

ମାଣିକ ଡରରେ ରମାକୁ ଡାକ ଛାଡ଼ିଲେ- ''ଏ ରମା, ଲୁଗା ଦି'ଖଣ୍ଡ ଧୋଇ ଦେଇଗଲୁ।'' ଯାଉଛି କହି ରମା ସାଙ୍ଗମାନଙ୍କ ମେଳରେ ପହଁରିବାକୁ ଲାଗିଲା।

ଆଈ କହିଲେ, ''ତୋ କଥାକୁ ତା'ର ଖାତର ଅଛିଟି ? ଦେଖୁନୁ, ତୁ ଡାକିଲୁ ଆଉ ସେ ଦଉଡ଼ି ଆସିଲା। ମୁହଁ ବଢ଼ଉଥା'। ଝିଅଟାଏ ତ କୋଉ ପୁଅ ହେଇଛି। ମଜା ପାଇବୁ। ମୋ କଥା ହେଜ କରୁଥିବୁ। ଯାଏଲୋ ମା', ମୋର ତେଣେ ଡେରି ହେଲାଣି।'' ଆଈ ଠାକୁରଙ୍କୁ ପାଣି ଟେକି ବନ୍ଧ ଉପରକୁ ଉଠିଗଲେ।

ତୁଠରେ ସାହିଟାଯାକର ଝିଅବୋହୂ ଠୁଳ ହେଇଛନ୍ତି। ତାଙ୍କରି ଆଗରେ ସାବି ଆଈ ଏତେ କଥା କହିଲେ। ମନଟା ପିତା ହେଇଗଲା ମାଣିକଙ୍କର। ଏତିକିବେଳକୁ ରମା ଆସି ବୋଉ ପାଖରେ ପହଞ୍ଚିଲା। 'ରହ ତୋ ମଜା ଛଡ଼ଉଛି' କହି ରମା ଗାଲରେ ଚଟକଣିଟାଏ ବସେଇବାକୁ ହାତ ଉଠେଇଲେ ମାଣିକ। ସପନିବୋଉ ପାଖରେ ଥିଲେ। ମାଣିକ ହାତଟାକୁ ଧରି ପକେଇଲେ। କହିଲେ, ''ଆଈ କଥାରେ କାହିଁକି ମାରୁଛୁ ଛୁଆଟାକୁ। ସେ କ'ଣ ଏମିତି ଦୋଷ କଲା ? ସବୁ ଛୁଆ ପହଁରୁଛନ୍ତି, ଗାଧୋଉଛନ୍ତି, ସେ ପହଁରିଲା। ସବୁଦିନେ ତ ଛୁଆମାନେ ଏମିତି ଗାଧାନ୍ତି। ଆଜି କ'ଣ ନୂଆ ଗାଧୋଇଲେ ? ଆଈଙ୍କି ତ ପର ପିଲା ଗନ୍ଧାନ୍ତି। ସେଥିରେ ଝିଅ ହେଲେ ତ କଥା ସରିଲା। ଝିଅପିଲାଟିଏ କ'ଣ ଯଦି କିଛି ଭଲ ଜିନିଷ ଖାଇବ,

ତେବେ ସେ ଟକରି ହେଇଯିବ। ଝିଅଟିଏ ଯଦି ବେଶୀ କଥା କହିବ ତେବେ ସେ ଉପରମୁହିଁ ହେଇଯିବ। ଝିଅମାନେ ଯଦି ମନଖୋଲି ହସିବେ, ଖେଳିବେ, ଦିହମୁଣ୍ଡ ସଫା ରଖିବେ, ତେବେ ସେମାନେ ଅଲାଜୁକି ହେଇଯିବେ। ଏ ସବୁ ତ ତାଙ୍କ ମୁହଁରେ ବସା ବାନ୍ଧିଛି। ତାଙ୍କ କଥା କ'ଣ ଧରୁଛୁ।''

ଗଉରୀବୋଉ କହିଲେ, ''ସତ କହିଲୁ ରାଧା ! ତାଙ୍କ କଥା ଧରିବସିଲେ ରଷି ଜଟା ଛିଣ୍ଡେଇ ମରିବ। ମୋ ସାନଝିଅ ଜନମ ବେଳକୁ ଶାଶୁଙ୍କୁ ଆସି କେତେ କଥା କହିଲେ। ଝିଅମାନେ ଶତ୍ରୁ। ଖାଲି ବୋହିବେ। ବୋହି ବୋହି ସବୁ ଫମ୍ପା କରିଦେବେ। ପୁଅ ନାହିଁ ତ ପୁତ୍ ନାମକ ନରକରୁ ଉଦ୍ଧାର ନାହିଁ। ତାଙ୍କ କଥା ଶୁଣି ମୋ ଦେହ ଖାଲି ଜଳି ଯାଉଥାଏ। କ'ଣ କହିବି, ଯେତେ ହେଲେ ଗୁରୁଜନ। ଚୁପ୍ ରହେ।''

ଦିନେ ସାନ ନଣନ୍ଦ ଚଞ୍ଚଳା ଆଉ ମୁଁ ବସିଥିଲୁ। ସେମିତି କଅଣ ଝିଅ ଝିଅ ହେଲେ। ଆଉ ଦିହ ସହିଲା ନାହିଁ। କହିଲି, ''ଆଇ ଝିଅ ଯେବେ ଶତ୍ରୁ, ତେବେ ତମେ ପୁଅଟିଏ ହେଲ ନାହିଁ ? ଝିଅ କାହିଁକି ହେଲ ? ଝିଅଙ୍କୁ ନିନ୍ଦୁଛ। ଖାଲି ପୁଅ ନେଇ କ'ଣ ସଂସାର ରହିବ ? ତମେ ଝିଅ ହେଇ ନ ଥିଲେ ଅଜା କାହାକୁ ନେଇ ସଂସାର କରିଥାଆନ୍ତେ ? କାହାକୁ ଏତେ ସୁଖ ପାଉଥାଆନ୍ତେ।''

ଚଞ୍ଚଳାକୁ ତ ଜାଣିଛ। ମହା ଫାଜିଲ୍। ଫସ୍କିନା କହିଲା, ''କାହିଁକି ଅଜା ହରି ବାରିକକୁ ସୁଖ ପାଉଥାଆନ୍ତେ।

ସେ ତ ଅଜାଙ୍କର ସବୁ ବୋଲହାକ କରେ। ସେବାଯତ୍ନ କରେ।" ସେଇଦିନଠୁଁ ମତେ ଆଉ ଝିଅ କଥା କିଛି କହନ୍ତି ନାହିଁ।

ହସରେ ନଈତୁଠ ଉଚ୍ଛୁଳି ପଡ଼ିଲା। ହସିଲା ନାହିଁ କେବଳ ରମା। ମୁହଁ ଫଣ ଫଣ କରି ଲୁଗାତକ ଧୋଇ ଲାଗିଲା। ଧୁଆଧୋଇ କରି "ଗଉରୀ ସାଙ୍ଗରେ ଘରକୁ ଯାଉଛି" କହି ବନ୍ଧ ଉପରକୁ ଉଠିଗଲା। କେତକୀ, ସପନି, ସଉରୀ ଓ ଆଉ ପିଲାମାନେ ଚୁପ୍‌ଚାପ୍ କାମସାରି ବନ୍ଧ ଉପରକୁ ଉଠିଲେ। ନଈତୁଠଟା ଶୂନ୍‌ସାନ୍ ହେଇଗଲା।

ରମା ଘରେ ପହଞ୍ଚି ଓଦା ଲୁଗାପଟା ବଦଳିଲା। ପାଲଟା ଲୁଗା ପଦାରେ ମେଲେଇଦେଲା। ମୁଣ୍ଡ ପୋଛାପୋଛି ହେଇ ଖଟଟା ଉପରେ ଚୁପ୍‌ଚାପ୍ ବସି ରହିଲା। ପଛେ ପଛେ ମାଣିକ ଆସି ପହଞ୍ଚିଲେ। ଏଣେତେଣେ ଚାହିଁ ରମାକୁ ଖୋଜିଲେ। ଶାଶୁ ଜପ କରୁଥିଲେ, କିଛି କହିଲେ ନାହିଁ। ରମା ବୋଲି ଡାକଟାଏ ଦେଲେ ମାଣିକ। ଜବାବ୍ ପାଇଲେ ନାହିଁ। ଘର ଭିତରକୁ ପଶି ଦେଖିଲେ ମୁଣ୍ଡ ନ କୁଣ୍ଡେଇ ରମା ବସି ରହିଛି। ଅଭିମାନ କରିଛି ଝିଅ, ଜାଣିପାରିଲେ। ପାନିଆଟା ଆଣି ଝିଅ ମୁଣ୍ଡ କୁଣ୍ଡେଇବାକୁ ଗଲେ। ବୋଉ ହାତକୁ ପେଲିଦେଲା ରମା।

ମାଣିକ ଝିଅ ହାତକୁ ଧରିଲେ। କହିଲେ, "ତତେ ସାବି ଆଈ ଗାଳି ଦେଲେ, ମୋ ଦେହ ସହିଲା ନାହିଁ। ମତେ କିଏ ଗାଳି ଦେଇଥିଲେ ତୋ ଦେହ ସହିଥାଆନ୍ତା ? ମୁଁ ଆକଟ ନ କଲେ ଭଲ କଥା ନ ଶିଖେଇଲେ ତତେ ଆଉ କିଏ ଶିଖେଇବ ? ବାପମା' ପିଲାଙ୍କୁ ସବୁ ଭଲ

କଥା ଶିଖାନ୍ତି । ପିଲାଙ୍କୁ ବାପମା'ଙ୍କଠାରୁ ଆଉ କିଏ ବେଶୀ ଭଲ ପାଏ ?''

ରମା କହିଲା, ''ହଁ ଭାରି ଭଲ ପାଉ। ସେଇଥିପାଇଁ ସମସ୍ତଙ୍କ ଆଗରେ ଗାଳି ଦେଲୁ। ମାରିବାକୁ ଉଠିଲୁ। ମତେ ଯୋଉ ଲାଜ ଲାଗିଲାନା ମୁଁ ସେମାନଙ୍କୁ କେମିତି ମୁହଁ ଦେଖାଇବି ?''

ବଲ ବଲ କରି ଝିଅ ମୁହଁକୁ ଅନେଇ ରହିଲେ ମାଣିକ। ଦଶ ବରଷର ଝିଅଟା। କାଲି ଲଙ୍ଗଳା ହେଇ ଲୁଗାକାନି ଟାଣୁଥିଲା। କେତେ ମାନମହତ ହିସାବ କଲାଣି। ବଡ଼ ମଣିଷଙ୍କ ପରି କଥା କହୁଛି। ଆଉ କିଛି ନ କହି କାମରେ ଚାଲିଗଲେ ମାଣିକ।

ଦି'ପହରେ ରାଧାନାନୀ ସିଲେଇଟାଏ ଧରି ଆସି ପହଞ୍ଚିଲେ। ବାପଘରେ ଥିଲେ ମାଣିକ ଘରକୁ ଏମିତି ସବୁଦିନ ଆସନ୍ତି। ବସିପଡ଼ି ରମାକୁ ଖୋଜିଲେ। ମାଣିକ କହିଲେ, ''ସକାଳୁ ତା'ର ସବୁ ବିଗିଡ଼ି ଯାଇଛି। ଭଲକରି ଖାଇ ନାହିଁ ପିଇ ନାହିଁ। ଘର ଭିତରେ ପଶି ରହିଛି।'' ଡାକ ଦେଲେ, ''ଏ ରମା, ରାଧାନାନୀ ଡାକୁଛି ବାହାରକୁ ଆ।''

ରମା ଘର ଭିତରୁ ବାହାରି ଆସିଲା। ଚୁପ୍‌ଚାପ୍ ରାଧାନାନୀ ପାଖେ ବସିଲା।

ରାଧାନାନୀ କହିଲେ, ''ଦି'ଟୋପା ପାଣି ଛିଟିକି ପଡ଼ିଲା। ସେଇଥିପାଇଁ ଏତେ କଟାସମ୍ପା। ମତେ ଭାରି ଚିଡ଼ି ଲାଗୁଥାଏ।''

ମାଣିକ କହିଲେ, "ଦେଖିଲ ନାହିଁ, ସେ କେମିତି କହିଲେ ବଡ଼ସାନ ମାନୁ ନାହାନ୍ତି। ଧରମ ସହିବ ନାହିଁ। ମତେ ବହୁତ ଖରାପ ଲାଗିଲା। ଭାବିଲି ସତରେ ଟିକେ ଆଡ଼େଇ ଯାଇଥିଲେ ପାଣିଛିଟିକା ପଡ଼ି ନ ଥାଆନ୍ତା। ସେତକ ନ କଲାରୁ ସିନା ପାଣି ପଡ଼ିଲା। ମୁଁ ତାକୁ ସେଇ କଥା କହିବାକୁ ଯାଇ ହାତଟା ଉଠେଇ ଦେଲି। ସେଇଥିରେ ଏତେ ମୁହଁଫୁଲା। କହିଲ ଭଲା ମା' ଯଦି ଠିକଣା କଥା ନ ବତେଇବ ଆଉ କିଏ ବତେଇବ ?"

ରାଧାନାନୀ କହିଲେ, "ଏଇଟା ଠିକ୍ କଥା। ମା' ପରା ସବୁଠୁ ବଡ଼ ଗୁରୁ। ବାପା ଆମକୁ ପିଲାଦିନେ ଗୋଟିଏ ଗପ କହୁଥିଲେ। ସେ ଗପ ଏବେ ବି ମୋର ମନେଅଛି। ଶୁଣ, କହୁଛି।"

ରମା ରାଧାନାନୀ ମୁହଁକୁ ଚାହିଁଲା। ରାଧାନାନୀ ଆରମ୍ଭ କଲେ। "ଚୋରଟିଏ ଦିନେ ଧରାପଡ଼ିଲା। ଉଣେଇଶି କୋଡ଼ିଏ ବର୍ଷର ଭେଣ୍ଡାଟାଏ। ଡମ୍ଫଳ ଡାଉଲ ଚେହେରା। ବିଲବାଡ଼ିରେ କାମ କରିଥିଲେ ପେଟ ଅପୋଷା ରହି ନ ଥାଆନ୍ତା। ଭଲରେ ଦିନ କଟୁଥାଆନ୍ତା। ହେଲେ ସେସବୁ ନ କରି ଚୋରୀ କଲା। ପେଟ ପୋଷିଲା। ଚୋରଘର ତ ସବୁଦିନ ଅନ୍ଧାର ନ ଥାଏ। ଦିନେ ଚୋରୀ କରୁ କରୁ ଧରାପଡ଼ିଲା। ବିଚାର ହେଲା। ବରଷେ ଜେଲ୍ ହେଲା। ବିଚାରପତି କହିଲେ, ତୋର କିଛି କହିବାର ଅଛି ଯଦି କହ। ଚୋର କହିଲା, ମୋର ବିଧବା ମାଆ ଛଡ଼ା ଆଉ କେହି ନାହିଁ। ମୋ ମା'କୁ ଡାକନ୍ତୁ, ମୁଁ ତାକୁ ଗୋଟେ କଥା କହିବି। ମା' ଆସିଲା। ଚୋରଟି ମା' କାନରେ ତା' କଥା କହିବ

ବୋଲି କହିଲା । ମା' ପୁଅ ପାଖକୁ ଯାଇ କାନ ଦେଖେଇ ଦେଲା । ପୁଅ ନିଜ ଦାନ୍ତରେ ମା' କାନ କାମୁଡ଼ି ଲହୁଲୁହାଣ କରିଦେଲା । ମା' ପାଟି କଲା, କାନ ଟାଣି ନେଲା । ସମସ୍ତେ ପାଟିକରି ଉଠିଲେ । ବିଚାରପତି ଚୋରକୁ ପଚାରିଲେ, ତୁ ଏମିତି କାହିଁକି କଲୁ ? ଚୋର କହିଲା, ମା' ପିଲାଦିନୁ ମତେ କହିବା କଥା, ଶୁଣେଇବା କଥା ଚୋରି କରିବା ଖରାପ । ପିଲାଦିନୁ ମତେ ଏ କଥା କହିଥିଲେ ମୁଁ ଚୋରିକରି ନ ଥାଆନ୍ତି । ପିଲାବେଳେ କାହା ବାରିରୁ କଖାରୁ, କାହା ବାରିରୁ ପିଜୁଳିଟାଏ ଆଣି ମା'କୁ ଦେଲେ ମା' ମନାକଲା ନାହିଁ । ଖୁସି ହେଲା । ମୋ କାମକୁ ପସନ୍ଦ କଲା । କଖାରୁ ଚୋର ପିଜୁଳି ଚୋର ହଉ ହଉ ମୁଁ ବଡ଼ ଚୋର ହୋଇଗଲି । ମା' ପାଇଁ ଆଜି ମୋର ଏ ଦଶା । ମା' ମତେ ପିଲାଦିନୁ ଭଲ କଥା ଶିଖେଇଲା ନାହିଁ ବୋଲି ମୁଁ ମାଆ କାନ ଛିଣ୍ଡେଇ ଦେଲି ।''

ମାଣିକ କହିଲେ, ''ସତ କଥା । ମା' ନ କହିଲେ କିଏ କହିବ ?''

''ତୁ ଘରେ ଆସି ମୋ ଭୁଲ୍ ମତେ କହିଲୁ ନାହିଁ । ସମସ୍ତଙ୍କ ଆଗରେ କାହିଁକି କହିଲୁ ? ମତେ ଦି'କଡ଼ାର କରିଦେଲୁ । ସମସ୍ତଙ୍କ ଆଗରେ ମତେ ମାରିବୁ, ଗାଳି ଦେବୁ । ମୁଁ କିଛି କହିଦେଲେ କହିବୁ ମୋ ମୁହଁରେ ଜବାବ ଦେଲୁ ।'' ଏତିକି କହି ରମା ଉଠିଗଲା ।

ମାଣିକ କହିଲେ, ''ସକାଳୁ ସେଇ ଗୋଟିଏ ରାହା ଧରିଛି । ସମସ୍ତଙ୍କ ଆଗରେ କାହିଁକି ମତେ ଗାଳି ଦେଲୁ, ମାରିବାକୁ ଉଠିଲୁ !''

ରାଧାନାନୀ କହିଲେ, "ତାକୁ ୧୦ ବରଷ ହେଲାଣି। ମାନମହତ କଥା ବୁଝିବ ନାହିଁ। ସମସ୍ତଙ୍କ ଆଗରେ ତାକୁ ମାରିବାକୁ ଉଠିଲୁ। ତା' ଆତ୍ମାକୁ ବାଧିଛି।"

"ଯେତେବେଳେ ଯୋଉ କଥା ନା! ଠିକଣାବେଳେ ଠିକଣା ବାଟ ନ ବତେଇଲେ ବିଗିଡ଼ି ଯିବ ନାହିଁ! ତମେ କହୁନ ମୁଁ ଠିକ୍ କି ଭୁଲ୍?"

ରାଧାନାନୀ କହିଲେ, "ଠିକ୍ ଯେ, ହେଲେ ବୁଝେଇ ଶୁଝେଇ ଠିକଣା ବାଟ ବତେଇଲେ ହବ ନାହିଁ! ବୁଝେଇଦେଲେ ସିନା ବୁଝିବେ, କରିବେ। ଗାଳିମନ୍ଦ କଲେ ଶଙ୍କି ଯିବେ, ଡରିବେ। ଆମ କହିବା କଥା କରିବେ ସିନା, ଭୁଲ୍ ଠିକ୍ ବାଛିବା ବାଟ ଶିଖିବେ। ସବୁଠୁଁ ବଡ଼ କଥା ହେଲା ଥରେ ଭୟ ପଶିଗଲେ ନିଜ ମନକଥା ଖୋଲି କହିବେ ନାହିଁ। ସବୁ ଲୁଚେଇବେ। ଦରକାରବେଳେ ପର ପାଖରେ ମନ ଖୋଲିବେ। ସେମାନଙ୍କୁ ବିଚାର ମାଗିବେ। ପିଲାଙ୍କ ମନକଥା ଜାଣିବା ପାଇଁ ବାପମା'ଙ୍କର ଆଉ ବାଟ ରହିବ ନାହିଁ। ପିଲା ଅବାଟରେ ଯାଉଛି କି ବାଟରେ ଯାଉଛି, ଧରି ହବ ନାହିଁ।"

ମାଣିକ କହିଲେ, "ରମା ମତେ ସବୁ କଥା କହେ ଯେ।"

ରାଧାନାନୀ—ହଁ ଏବେ କହୁଛି? ହେଲେ ତୁ ଏମିତି କଥା କଥାରେ ତାକୁ ଗାଳିମନ୍ଦ କଲେ ଭାବିବ ତୁ ତା' କଥା ପସନ୍ଦ କରୁନୁ। ତାକୁ ଭଲ ପାଉନୁ। ଏମିତି ହେଲେ ଆଉ ସେ ତତେ ମନଖୋଲି ସବୁ କହିବ ନାହିଁ। ଆଜି ସିନା ପିଲା ହେଇଛି। କାଲିକି ତ' ସେ ବଡ଼ ହେବ।

ସଂସାରର ଦାୟିତ୍ୱ ତୁଲେଇବା ପାଇଁ ତା' ଦେହ ସବଳ ହେବ, ମନ ସଜିଲ୍ ହେବ। କେତେ ଅଜଣା କଥା ଜାଣିବାକୁ ସେ ମନ ବଳେଇବ। କାହାକୁ ପଚାରିବ ଜାଣିପାରିବ ନାହିଁ। ପିଲାଙ୍କୁ ଦେଖି ତାଙ୍କ ମନକଥା ବୁଝି ମା' ପରା ସବୁ ବତେଇବା କଥା! ସବୁ ଠିକ୍ ଠିକ୍ ନ ଜଣେଇଲେ ଅଜାଣତରେ କେତେ ଭୁଲ୍‌ଭଟକା ହେଇଯିବ। ପିଲା ଦୁଃଖ ପାଇବ। ଲୋକେ ଦୋଷ ଦେବେ, ନିନ୍ଦା କରିବେ। ଆଜି ଟୁଛାଟାରେ ଆଈ କେମିତି ହେଲେ ଦେଖିଲୁଟି?

ରାଧାନାନୀ କହିଲେ, "ହଁ ପରା, ତା' ମନକୁ କ'ଣ କମ୍ ବାଧୁଛି! ମୋ ମନ ପରା କ'ଣ ହେଇଯାଉଛି! ଛୁଆଟାକୁ ମୋର କେତେ କଥା କହିଲେ"- କହି କାନ୍ଦି ପକେଇଲେ ମାଣିକ। ମାଣିକ ଆଖିରୁ ଲୁହ ପୋଛିଦେଲେ ରାଧାନାନୀ। କହିଲେ, "କାନ୍ଦନା। ପିଲାଟା ତ ଦୁଷ୍ଟ ନୁହଁ। ଜାଣି ଜାଣି ପାଣିଛିଟିକା ପକେଇ ନାହିଁ। ତୁ କାହିଁକି ଏତେ ବ୍ୟସ୍ତ ହଉଛୁ!"

"କେମିତି ମୁହଁ ଶୁଖେଇ ବୁଲୁଛି ଦେଖୁନ! ଦିନସାରା ଭଲକରି ଖାଇ ନାହିଁ, ପିଇ ନାହିଁ। ମୋ ଛାତିତଳେ କ'ଣ ଯେପରି ଅଟକି ଯାଉଛି" ମାଣିକ କହିଲେ।

ରାଧାନାନୀ – "ଦେଖେ ପିଲାଟିଏ ଉତ୍ତାରିବା ବଡ଼ ଦାୟିତ୍ୱ। ସେଥିରେ ପୁଣି ଏଇ ଯୋଉ ବୟସ। କଥାକଥାକେ ହସ। କଥାକଥାକେ କାନ୍ଦ। କଥାକଥାକେ ରୁଷା। ଖାଲି କ'ଣ ସେତିକି, ସବୁଆଡ଼େ ଧିଆନ, ସବୁ କରିବାକୁ ମନ। ପିଲାଙ୍କର ୧୦ ବର୍ଷରୁ ଷୋହଳ ବର୍ଷ ପର୍ଯ୍ୟନ୍ତ ବୟସ ବଡ଼ ଅଖାଡୁଆ ବୟସ।"

ମାଣିକ କହିଲେ, ''ହଁ ପରା, ଦେଖୁନୁ ଟିକେ କଥାରେ କେମିତି ଗର ଗର ଫଣ ଫଣ। ଯାକୁ ମୁଁ କେମିତି ସମ୍ଭାଳିବି ଯେ !''

ରାଧାନାନୀ – ''ବାପମା'ଙ୍କୁ ସବୁ ଅଳିଅର୍ଦ୍ଦଳି ସମ୍ଭାଳିବାକୁ ପଡ଼ିବ। ପିଲା ବଡ଼ ହଉଛନ୍ତି। ତାଙ୍କର ମନ ସମସ୍ତେ ତାଙ୍କୁ ବଡ଼ମଣିଷ ପରି ଦେଖନ୍ତୁ। ତାଙ୍କ ସାଙ୍ଗରେ ବଡ଼ଙ୍କ ପରି କାରବାର କରନ୍ତୁ। ଝିଅ କେମିତି ମଣ୍ଡିକଥାଟା କହୁଛି ଦେଖେ। ତୁ ଗାଳିଦବାଟା ସେ ଧରୁ ନାହିଁ। ସମସ୍ତଙ୍କ ଆଗରେ ଗାଳିଦବାଟା ତା' ମନକୁ ବାଧୁଛି, ବ୍ୟସ୍ତ ହୁଅନା। ସେ ବଡ଼ ହେଲା ଭିତରେ ଏମିତିକା କେତେ କ'ଣ ହବ। ତତେ ହିଁ ସବୁ ସମ୍ଭାଳିବାକୁ ପଡ଼ିବ। ତୁ ପରା ମାଆ ! ତୁ ଯଦି ଗୋଡ଼ କଚାଡ଼ିବୁ ତାଙ୍କୁ ଠିକଣା ବାଟରେ କିଏ ନବ ?''

ଏତିକିବେଳକୁ ଗଉରୀ, ତା' ଭାଇ ସଉରି, ତଳସାହି ସପନି ଆଉ ଉମା ଆସି ପହଞ୍ଚିଲେ। ଛୋଟବଡ଼ ହେଲେ ବି ସମସ୍ତେ ସାଙ୍ଗ। ରମାକୁ ବାହାରେ ନ ଦେଖି ଗଉରୀ ଘର ଭିତରକୁ ଗଲା। ରମାକୁ ସାଙ୍ଗରେ ଆଣି ସମସ୍ତଙ୍କ ପାଖେ ବସିଲା।

ଗଉରୀ କହିଲା, ''ଆଈ ଉପରେ ମୋର ଆଜି ବହୁତ ରାଗ ହଉଥିଲା। ନଈଟା ଯେମିତି ତା'ର ! ଆଉ କେହି ସେଠି ଗାଧୋଇବ ନାହିଁ। ପାଣିଛିଟିକା ଟିକେ ପଡ଼ିଗଲା ଯେ ମହାଭାରତ ଅଶୁଦ୍ଧ ହୋଇଗଲା।''

ମାଣିକ କହିଲେ, ''ନାଇଁ ବଡ଼ମଣିଷଙ୍କ ପାଖରେ ଟିକେ ହୁସିଆରିରେ ଚଳିବା କଥା।''

ସପନି କହିଲା, "ନାଇଁ ମାଉସୀ, ରମାର କିଛି ଦୋଷ ନାହିଁ। ସେ ତ ସବୁଦିନ ଚିତ୍ ପହଁରାରେ ଜିତେ। କାଲି କେମିତି କେଜାଣି ମୁଁ ଜିତି ଯାଇଥିଲି। ଆମର ଆଜିକୁ ବାଜି ପଡ଼ିଥିଲା। ସେ ଆଜି ନିଶ୍ଚୟ ଜିତିବ କହିଥିଲା। ଉଛୁରୁ କରି ତ ପହଞ୍ଚିଛି। ଆମକୁ ସବୁ ଦେଖି ଭୁସ୍‌କିନା ପାଣିରେ ପଶିଯାଇଛି। ମୋରି ଯୋଗୁଁ ଏତେ ଗାଳି ଖାଇଲା ବିଚାରି।"

ରମା ଚିଡ଼ିଯାଇ କହିଲା, "ତୁ ଆଉ ଏତେ ସୁଆଗ ଦେଖାନା। ସକାଳେ ତ ରାଧାନାନୀକୁ ଛାଡ଼ିଦେଲେ ସମସ୍ତଙ୍କ ପାଟିରେ ବେଙ୍ଗ ପଶିଥିଲା, ଏବେ କାହିଁକି ଖଇ ଫୁଟୁଛି?"

ପୁଣି ଝଗଡ଼ା ଲାଗିଯିବ ଭାବି ଗଉରୀ କହିଲା, "ଛାଡ଼ ସେସବୁ କଥା। ଗଲା କଥା ତ' ଗଲାଣି। ଆସ ଲୁଡୁ ଖେଳିବା।"

ସେ ସମସ୍ତଙ୍କୁ ଭିଡ଼ାଭିଡ଼ି କରି ଭିତରକୁ ନେଲା। ଖେଳ ଆରମ୍ଭ ହେଲା। ଖେଳ ଭିତରେ ପିଲାଙ୍କର ସବୁ ମାନ ଅଭିମାନ ହଜିଗଲା।

ଏମିତି ଦିନ ଗଡ଼ି ଚାଲିଲା। ରମା, ଗଉରୀ ଆଉ ସଉରି ଗାଁ ସ୍କୁଲ୍‌ରେ ପଢ଼ିବାକୁ ଲାଗିଲେ। ସପନି କଟକରେ ଯାଇ ପାଠ ପଢ଼ିଲା। ଗାଁର ଆଉ ଦି'ତିନିଜଣ ପିଲା ବି ସହର ଗଲେ ପାଠପଢ଼ି। ଲମ୍ବା ଛୁଟି ହେଲେ ବେଳେ ବେଳେ ସମସ୍ତେ ପୁଣି ଏକାଠି ହୁଅନ୍ତି। ହେଲେ ପିଲାଦିନଗୁଡ଼ାକ କେମିତି ହଜି ହଜି ଯିବାକୁ ଲାଗିଲା।

ଏଥର ବରଷକ ପରେ ସପନି ଗାଁକୁ ଆସିଛି। ସଉରିକୁ ସାଙ୍ଗରେ ଧରି ସମସ୍ତଙ୍କ ସାଙ୍ଗେ ଦେଖାକରି ବାହାରିଲା।

ରମା ଘରକୁ ଆସି ଦେଖିଲା ଦାଣ୍ଡ କବାଟ କିଳା ହେଇଛି। ଡାକ ଦେଲା, "ମାଉସୀ କବାଟ ଖୋଲ।"

ଘରେ ରମା ଆଉ ମାଣିକ ଥିଲେ। ଡାକ ଶୁଣି ମାଣିକ କହିଲେ, "ସପନି ପାଟି ପରି ଶୁଭୁଛି। ରମା ଦାଣ୍ଡ କବାଟଟା ଖୋଲି ଦେଲୁ!" ରମା ଠିଆହୋଇ ପଡ଼ିଲା। ନିଜ ଦେହମୁଣ୍ଡକୁ ଚାହିଁ କହିଲା- "ଏ ଜାମାଟା ମତେ ଖାଲି ଜାକି ହଉଛି। ଏଇଟା ବଦଳି ଆଉ ଗୋଟାଏ ପିନ୍ଧି ଆସେ। ତୁ କବାଟ ଖୋଲ।" ତର ତର ହୋଇ ଘର ଭିତରକୁ ପଶିଗଲା ରମା।

ମାଣିକ ଦାଣ୍ଡ କବାଟ ଫିଟେଇ ଦେଲେ। ଆଗରେ ଏ କିଏ? ସପନି ମାଣିକକୁ ମୁଣ୍ଡିଆ ମାରିଲା। କହିଲା, "ମାଉସୀ, ଭଲ ଅଛ!"

ମାଣିକ କହିଲେ, "ହଁ ପୁଅ ସବୁ ଭଲ। ତମ ଘରେ ସବୁ ଭଲ ତ'?"

ସପନି 'ହଁ' କହି ରମାକୁ ଖୋଜିଲା।

"ଆସ ଭିତରକୁ ଆସ। ମୁଁ ସପଟା ଆଣେ, ଅଗଣାରେ ବସିବା" କହି ଶୋଇବା ଘରକୁ ପଶିଗଲେ ମାଣିକ।

ଦର୍ପଣ ପାଖରେ ଠିଆହୋଇ ମୁଣ୍ଡ କୁଣ୍ଡୋଉଛି ରମା। ଏଥିଭିତରେ ବଡ଼ ଜାମାଟାଏ ବଦଳେଇଛି। ମୁହଁ ହାତ ପୋଛାପୋଛି କରିଛି। ଟିପାଟିଏ ପିନ୍ଧିଛି। ବୋଉ ସାଙ୍ଗରେ ବାହାରି ଆସିଲା ରମା। ସପନିକୁ ଚାହିଁ ରହିଲା। କେଡ଼େ ଡେଙ୍ଗା ହୋଇଯାଇଛି ସପନି! କଥା କହିଲାବେଳେ ସ୍ୱରଟା କେମିତି ଭାଙ୍ଗି ଭାଙ୍ଗି ଯାଉଛି। ସହରକୁ ଯାଇ ସପନି କେତେ ବଦଳି ଯାଇଛି। ମନେ ମନେ ଭାବିଲା ରମା।

ସପନି କହିଲା, "କଅଣ ଚିହ୍ନିପାରୁନୁ କି? ଏମିତି ଚାହିଁଛୁ?"

ରମା ଲାଜେଇଗଲା। କହିଲା, "ଧେତ୍ ଚିହ୍ନି ପାରିବି ନାହିଁ କାହିଁକି? ପଛରୁ ଦେଖିଥିଲେ କିନ୍ତୁ ଚିହ୍ନିପାରି ନ ଥାନ୍ତି। କେତେ ଡେଙ୍ଗା ହେଇଯାଇଛୁ। ତୋ କଥା କ'ଣ ଏମିତି ଫାଟିଲା ପରି ଶୁଭୁଛି। ସହରର ପାଣି ତୋ ଦେହରେ ଯାଉ ନାହିଁ ବୋଧେ!"

ସପନି କିଛି କହିଲା ନାହିଁ, ଚୁପ୍ ରହିଲା। ମାଣିକ ସପନିଠୁଁ କଟକ ସହର ଖବର ବୁଝିଲେ। ତା' ବାପାବୋଉ ଆଉ ଭଉଣୀଙ୍କ କଥା ପଚାରିଲେ। ଏଣୁତେଣୁ ଦୁଃଖସୁଖ ହେଲେ। ରମା କ'ଣ କଥା ହେବ ବୁଝିପାରିଲା ନାହିଁ। ଚୁପ୍‌ଚାପ୍ ବସିଲା।

କେତେବେଳ ପରେ ସପନି ରମାଆଡ଼େ ଚାହିଁ କହିଲା, "ତୁ କ'ଣ କିଛି କହୁନୁ! ରାଗିଛୁ କି?"

ରମା କହିଲା, "ରାଗିବି କାହିଁକି! ତତେ ଦେଖୁଛି। ମୁହଁସାରା ଏମିତି କ'ଣ ହେଇଛି! ଖାଲି କଳାଦାଗ!"

ରମା କଥାରେ ସପନିକୁ ଲାଜ ଲାଗିଲା। କହିଲା, "ଏବେ କ'ଣ ଏମିତି ବ୍ରଣଗୁଡ଼ା ହଉଛି। ଚିପି ଖଣ୍ଡିଆ କରିଦେଲେ କଳା ପଡ଼ିଯାଉଛି। ଏଗୁଡ଼ା ପାଇଁ ମତେ ଖାଲି ଲାଜ ଲାଗୁଛି।"

ରମା କହିଲା, "କାହାକୁ ଦେଖଉନୁ! ଏମିତି ହେଲେ ତ' ଆର ଥରକୁ ଆସିଲାବେଳକୁ ମୁହଁସାରା କଳା ପଡ଼ିଯାଇଥିବ। କେହି ଆଉ ଚିହ୍ନିପାରିବେ ନାହିଁ।"

ସପନି କଅଣ କହିବ ଭାବିପାରିଲା ନାହିଁ, ଚୁପ୍ ରହିଲା। ଭାବିଲା, ରମା କେମିତି ମାମଲତକାର ପରି କଥା କହୁଛି। ରମା ଭାବିଲା, ସପନି କେମିତି ବଦଳି ଯାଇଛି।

ସପନି, ସଉରି ଆଉ ରମା ଆଗପରି ମନଖୋଲି କଥାବାର୍ତ୍ତା ହେଇପାରିଲେ ନାହିଁ। ଅଳ୍ପ ସମୟ ପରେ ଦିହେଁ ଯିବାକୁ ବାହାରିଲେ। ମାଣିକ କହିଲେ, "ହଉ ଯା', ଯିବା ଆଗରୁ ଆସିବୁ।"

ଛୁଟି ସରିଲା। ସପନି କଟକ ଫେରିଲା। ଦର୍ପଣ ଆଗରେ ଠିଆହୋଇ ତା'ର ରମାକଥା ମନେପଡ଼େ। ତା' ମୁହଁରେ ବ୍ରଣ ଦେଖି ରମା କେମିତି ନାକ ଟେକିଲା। ସେ ବ୍ରଣକଥା କହିଲାବେଳେ ତାକୁ ବହୁତ ଲାଜ ମାଡ଼ିଲା। ରମା ଠିକ୍ କହିଛି। କାହାକୁ ବ୍ରଣ କଥା ପଚାରିବାକୁ ହେବ। ଆଉ ଥର ଗାଁକୁ ଗଲାବେଳକୁ ମୁହଁ ଯେମିତି ଚିକ୍କଣ ହେଇଯାଇଥିବ। ଗୋଟାଏହେଲେ ବ୍ରଣ ନ ଥିବ। ଭଙ୍ଗାସ୍ୱରକୁ ବି ଔଷଧ ଖାଇ ଠିକଣା କରିବାକୁ ପଡ଼ିବ। ସପନି ମନେ ମନେ ଭାବିଲା। ଠିକଣା କରି ପାରିଲା ନାହିଁ, କାହାକୁ ପଚାରିବ।

ଦୁଇ ଦିନ ପରର କଥା। ସେଦିନ ତା' ସାଙ୍ଗ ନବୀନର ଜନ୍ମଦିନ। ନବୀନ ସପନିକୁ ବହୁତ କରି କହିଛି। ରାତିରେ ତାଙ୍କ ଘରକୁ ଯିବ। ସେଇଠି ଖାଇବ। ଅନ୍ୟ ସାଙ୍ଗମାନେ ବି ଯିବେ। ସଞ୍ଜବତୀ ଲାଗିଲା ପରେ ବାପାଙ୍କୁ କହି ସେ ନବୀନ ଘରକୁ ଗଲା। ନବୀନ ଘରେ ଲୋକଗହଳି। ସପନିକୁ ଟିକେ ଅଡୁଆ ଅଡୁଆ ଲାଗିଲା। ନବୀନ କୋଉଠି

ଦିଶୁ ନ ଥାଏ। କ'ଣ କରିବ ଭାବି ପାରିଲା ନାହିଁ। ଏଣେ ତେଣେ ଚାହିଁଲା। ଗୋଟିଏ ଜାଗାରେ ମୁକୁନ୍ଦ, ନରେଶ ଆଉ କେତେ ସାଙ୍ଗଙ୍କୁ ଦେଖିଲା। ସପନି ସେମାନଙ୍କ ପାଖକୁ ଗଲା।

ଏତିକିବେଳକୁ ଜଣେ ଲୋକ ନବୀନ ଘର ଭିତରୁ ପଦାକୁ ବାହାରି ଆସିଲେ। ସେମାନଙ୍କ ପାଖକୁ ଆସି କହିଲେ, "ତମେସବୁ ଏଠି କ'ଣ ଠିଆ ହେଇଛ। ଘର ଭିତରକୁ ଆସ।" ଏତିକିବେଳକୁ ନବୀନ ଆସି ପହଞ୍ଚିଲା। କହିଲା, "ଇଏ ମୋ ବଡ଼ଭାଇ, ମୁନା ଭାଇ। ବୁର୍ଲାରେ ଡାକ୍ତର ଅଛନ୍ତି। ମାସେ ଛୁଟିରେ ଆସିଛନ୍ତି।" ସମସ୍ତେ ନବୀନର ବଡ଼ଭାଇଙ୍କୁ ନମସ୍କାର କଲେ।

"କୁନା, ପିଲାମାନଙ୍କୁ ଡାକିଆଣି ଖାଇବା ପାଇଁ ବସେଇ ଦେ'। ମୁଁ ଭିତରକୁ ଯାଇ ଦେଖୁଛି" କହି ମୁନାଭାଇ ତର ତର ହୋଇ ଚାଲିଗଲେ।

ନବୀନ ଓ ତା' ସାଙ୍ଗମାନେ ଏକାଠି ଖାଇ ବସିଲେ। ନବୀନର ବାପମା' ଓ ଭାଇ ସମସ୍ତଙ୍କୁ ଯତ୍ନରେ ଖୁଆଇଲେ। ସପନିକୁ ସେ ସନ୍ଧ୍ୟାଟି ବହୁତ ଭଲ ଲାଗିଲା। ମୁନାଭାଇଙ୍କୁ ଭାରି ଭଲ ଲାଗିଲା।

ସପନି ରାତିରେ ଠିକ୍ କଲା, ମୁନାଭାଇଙ୍କୁ ନିଜ କଥା କହିବ। ତାଙ୍କଠୁଁ ଉପଦେଶ ନେବ। ଯାହା ଔଷଧ ଦେବେ ଖାଇବ। ଆର ଥର ଗାଁକୁ ଗଲେ ରମା ଯେମିତି ଅସୁଖ ନ ପାଏ।

ପରଦିନ ସକାଳେ ପାଠସାରି ସେ ବହିପତ୍ର ଧରି ସଅଳ ବାହାରିଲା। ଖେଳଛୁଟିରେ ଆସି ଖାଇବ ବୋଲି

ବୋଉକୁ କହିଲା । ତର ତର ହୋଇ ନବୀନ ଘରେ ପହଞ୍ଚିଲାବେଳକୁ ମୁନାଭାଇ କୁଆଡ଼େ ବାହାରୁଥିଲେ । ସପନି ତାଙ୍କୁ ନମସ୍କାର କରି ଚୁପ୍‌ଚାପ୍ ଠିଆ ହେଲା । ମୁନାଭାଇ କହିଲେ , "କୁନା ଘରେ ଅଛି, ଭିତରକୁ ଯାଆ ।"

ସପନି କହିଲା, "ମୁଁ ଆପଣଙ୍କ ପାଖକୁ ଆସିଥିଲି ।" ମୁନାଭାଇ ପଚାରିଲେ, "ଘରେ କାହାର କ'ଣ କିଛି ଅସୁବିଧା ହେଇଛି ?" ସପନି ନାହିଁ କଲା । କହିଲା, "ନିଜ କଥା- ମୋର ଟିକେ ପଚାରିବାର ଥିଲା ।" ମୁନାଭାଇ କହିଲେ, "ତୋର କ'ଣ ହେଇଛି ? ଝାଡ଼ା ହଉଛି ? ଜର ହେଇଛି ?" ସପନି କହିଲା, "ନାଇଁ ସେସବୁ କିଛି ନୁହଁ । ଆପଣଙ୍କୁ କେତେବେଳେ ଟିକେ ବେଳ ହେଲେ ମୋ ଦେହ କଥା ପଚାରି ବୁଝନ୍ତି । ଆଜି ନ ହେଲେ ଦୁଇ ତିନି ଦିନ ପରେ ହେଲେ ବି ଚଳିବ ।"

ମୁନାଭାଇ ତାକୁ ଉପରବେଳା ଆସିବାକୁ କହି ଚାଲିଗଲେ ।

ଉପରବେଳା ସଞ୍ଜ ଆଗରୁ ସପନି ନବୀନ ଘରେ ପହଞ୍ଚିଲା । ମୁନାଭାଇ ସପନି ଓ ନବୀନକୁ ନେଇ ଦାଣ୍ଡଘରେ ବସିଲେ । ପଚାରିଲେ, "କହ, କହିବୁ ପରା, କହ ।" ସପନି ଚୁପ୍ ରହିଲା । କଅଣ କହିବ ଠିକ୍ କରିପାରିଲା ନାହିଁ । କିଛି ସମୟ ପରେ କହିଲା, "ମୋ ମୁହଁସାରା ଖାଲି ବ୍ରଣ ହେଉଛି । କଣ୍ଠଟା ଖାଲି ଭାଙ୍ଗି ଭାଙ୍ଗି ଯାଉଛି !"

ମୁନାଭାଇ କହିଲେ, "ଓ, ଏଇ କଥା ! ଏଇଥିପାଇଁ ଡରି ଯାଉଛୁ ! ଏପରି ହେବା କିଛି ରୋଗ ନୁହଁ । ଚଉଦ ପନ୍ଦର ବର୍ଷର ସବୁ ପୁଅ ପିଲାଙ୍କର ଏମିତି ହୁଏ । କାହାର

ଶୀଘ୍ର ହୁଏ, କାହାର ବା ଡେରିରେ ହୁଏ। ଜଣ ଜଣଙ୍କର ଏପରି ମୋଟେ ହୁଏ ନାହିଁ। ଏଟା ଏଇ ବୟସର ଲକ୍ଷଣ। ସାଧାରଣ କଥା।'' ସପନି ଆଶ୍ଚର୍ଯ୍ୟ ହେଇ କହିଲା, ''ସ୍ୱର ଏମିତି ହେବା ବି କଅଣ ସାଧାରଣ କଥା ?''

ମୁନାଭାଇ- ହଁ। ତମେ ଦି'ଜଣ ସବୁ ଜାଣ। ତୁମେ ଛୋଟ ପିଲା ଦେଖୁଛ। ତୁମ ବୟସର ପିଲା ଦେଖୁଛ। ଆମପରି ବଡ଼ ମଣିଷ ପୁଣି ଆମଠୁଁ ଆହୁରି ବଡ଼ ବୁଢ଼ାବୁଢ଼ୀଙ୍କୁ ଦେଖୁଛ। ଜନ୍ମ ହେଲାଦିନୁ ମରିବାପର୍ଯ୍ୟନ୍ତ ସବୁ ପ୍ରାଣୀ ସାଧାରଣତଃ ଏମିତି ଚାରୋଟି ଅବସ୍ଥା ଦେଇ ଯାଆନ୍ତି। ଅଳ୍ପ ବୟସରେ ମରିଗଲେ ତ ଅଲଗା କଥା। ମଣିଷମାନଙ୍କର ଏଇ ଅବସ୍ଥାଗୁଡ଼ିକୁ ଶିଶୁ, କିଶୋର, ଯୁବକ ଓ ବୃଦ୍ଧ ଅବସ୍ଥା କହନ୍ତି। ତମେ କୋଉ ଅବସ୍ଥାରେ ଅଛ, ମୁଁ କୋଉ ଅବସ୍ଥାରେ ଅଛି କହିଲ ?

ନବୀନ କହିଲା, ''ଆମେ କିଶୋର ଅବସ୍ଥାରେ ଆଉ ଆପଣ ଯୁବକ ଅବସ୍ଥାରେ ଅଛନ୍ତି।''

ମୁନାଭାଇ - ଠିକ୍ କହିଛୁ। ଦଶ ବର୍ଷରୁ ୧୬ ବର୍ଷ ପର୍ଯ୍ୟନ୍ତ ବୟସର ପିଲାଙ୍କୁ କିଶୋର କିଶୋରୀ ଭାବରେ ଧରାଯାଏ। ଏଇ ବୟସ କିଶୋର ବୟସ। ଷୋହଳ ବର୍ଷ ପରେ ତୁମକୁ ଯୁବକଭାବେ ହିସାବ କରିବେ। ଗୋଟିଏ ଅବସ୍ଥାରୁ ଅନ୍ୟ ଅବସ୍ଥାରେ ପହଞ୍ଚିବା ପାଇଁ ଦେହ କେତେ ପ୍ରକାର ବଦଳେ। କିଶୋର ଅବସ୍ଥାରେ ପୁଅମାନଙ୍କର କଣ୍ଠସ୍ୱର ମୋଟା ହୁଏ। ଅନେକଙ୍କର କଥା କହିଲାବେଳେ ସ୍ୱର ଭାଙ୍ଗି ଭାଙ୍ଗି ଯାଏ। କଣ୍ଠ ହାଡ଼ ମଧ୍ୟ ଟିକେ ବାହାରକୁ ବାହାରି ଆସିଲା ପରି ଦେଖାଯାଏ। ଯେମିତି ସପନିର ହେଇଛି।

ସପନି- ନବୀନର ବି ଏମିତି ହବ ?

ମୁନାଭାଇ - ହଁ ପ୍ରାୟ ଏମିତି ହବ। ଅଧିକାଂଶ ପୁଅଙ୍କର ଏଇ ବୟସରେ ଏମିତି ହୁଏ। ତୁମେ ଆହୁରି ଲକ୍ଷ୍ୟ କରୁଥିବ ତୁମର ଜଂଘ ଓ କାଖରେ ରୁମ ଗଜୁରିଥିବ। ଏତିକିବେଳେ ପୁଅମାନଙ୍କ ମୁହଁରେ ନିଶଦାଢ଼ି ହୁଏ। ତୁମେ ଦି'ଜଣ ପତଳା, କେହି କେହି ହଠାତ୍ ଡେଙ୍ଗା ହେଇଯାଆନ୍ତି। ପୁଅମାନଙ୍କ ଦେହ ଏଇ ସମୟରେ ଭାରି ହୁଏ।

ନବୀନ- ସପନି ବି ହଠାତ୍ ଡେଙ୍ଗା ହେଇଯାଇଛି।

ସପନି- ମୁହଁରେ ବ୍ରଣ ଯୋଗୁଁ ମତେ ଭାରି ଲାଜ ଲାଗୁଛି।

ମୁନାଭାଇ - ଅନେକଙ୍କର ଏହି ସମୟରେ ମୁହଁରେ ବ୍ରଣ ଉଠେ। ମୁହଁ ପରିଷ୍କାର ନ ରଖିଲେ, ଝାଡ଼ା ସଫା ନ ହେଲେ ସାଧାରଣତଃ ବ୍ରଣ ହୁଏ। ଏତିକିବେଳେ ନିତି ବ୍ୟାୟାମ ଓ ଖେଳାଖେଳି କରିବ। ରକ୍ତ ଚଳାଚଳ ଭଲ ହେବ। ଝାଳ ବୋହିବ। ସଫାସୁତୁରା ହୋଇ ଗାଧୋଇବ। ଦିନକୁ ୪/୫ ଥର ଥଣ୍ଡାପାଣିରେ ମୁହଁ ଧୋଇଲେ ମଇଳା ଜମି ରହିବ ନାହିଁ। ଯା ସାଙ୍ଗକୁ ସବୁଜ ପନିପରିବା ଓ ଫଳମୂଳ ଖାଇଲେ ବ୍ରଣ ହେବା କମିଯିବ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେହ କେତେ ପ୍ରକାର ବଦଳିବ। ଏସବୁ କାହିଁକି ହେଉଛି, ଏମିତି ହେଲେ କ'ଣ କରିବାକୁ ହେବ ଜାଣିବା ଦରକାର। ଏସବୁକୁ ରୋଗ ଭାବି ତୁଟୁକା ଔଷଧ ବ୍ୟବହାର କରିବ ନାହିଁ।

ସପନି- ଆପଣଙ୍କ କଥା ଶୁଣି ମତେ ବହୁତ ଭଲ ଲାଗୁଛି।

ମୁନାଭାଇ- ଆଉ ଗୋଟିଏ କଥା ମୁଁ ତୁମକୁ କହିବି। ତୁମେ ନିଶ୍ଚେ ଏ କଥା ଲକ୍ଷ୍ୟ କରିଥିବ। ଏ ବିଷୟରେ ଜାଣିବାକୁ ତୁମର ଆଗ୍ରହ ଥିବ। କିନ୍ତୁ ତୁମେ ଲାଜରେ

ପଚାରୁନ। ଏବେ ସମୟ ସମୟରେ ତୁମ ପରିସ୍ରା ଦ୍ୱାର ଦେଇ ଅଳ୍ପ ଧଳା ଧଳା ଅଠାଳିଆ ପଦାର୍ଥ ବାହାରୁଥିବ। ଏଥିପାଇଁ ଭୟ କରିବାର କିଛି ନାହିଁ। ଏମିତି ହେବା ପୁରୁଷତ୍ୱର ଲକ୍ଷଣ। ଏହାକୁ 'ବୀର୍ଯ୍ୟ' କୁହାଯାଏ। ତୁମେ କାଲିକୁ କାଲି ଆହୁରି ବଡ଼ ହେବ। ଯୁବକ ହେବ। ବାହାସାହା ହେଇ ତୁମର ପିଲାପିଲି ହେବ। ଏଥିପାଇଁ ତୁମ ଦେହ ପ୍ରସ୍ତୁତ ହେଉଛି।

ସପନି ଓ ନବୀନ ମୁହଁ ପୋତି ବସି ରହିଲେ।

ମୁନାଭାଇ- ବୀର୍ଯ୍ୟରେ ବହୁସଂଖ୍ୟାରେ ଶୁକ୍ରକୀଟ ଥାଏ। ଛୁଆଟିଏ ହେବା ପାଇଁ ଶୁକ୍ରକୀଟ ଦରକାର। ଶୁକ୍ରକୀଟ ଏକା ଛୁଆ ସୃଷ୍ଟି କରିପାରିବ ନାହିଁ। ବାର ତେର ବର୍ଷ ହେଲେ ଝିଅମାନଙ୍କ ଦେହ ମଧ୍ୟ ସନ୍ତାନ ସୃଷ୍ଟି କରିବା ପାଇଁ ପ୍ରସ୍ତୁତ ହୁଏ। ଏଥିଲାଗି ସେମାନଙ୍କ ଦେହରେ ମଧ୍ୟ ଗୋଟେ ପ୍ରକାର ପଦାର୍ଥ ବାହାରେ। ତାହାକୁ 'ଡିମ୍ବ' କହନ୍ତି। ସ୍ତ୍ରୀର ଡିମ୍ବ ସାଙ୍ଗରେ ପୁରୁଷର ଶୁକ୍ରକୀଟ ମିଶିଲେ ମା' ପେଟରେ ଛୁଆଟିଏ ରହିବ।

ବାର ତେର ବର୍ଷ ବୟସରୁ ପୁଅ ଓ ଝିଅଙ୍କଠାରେ ଏମିତି ହଠାତ୍ ପରିବର୍ତ୍ତନସବୁ ଦେଖାଦିଏ। ଏସବୁ ଦେଖି ସେମାନଙ୍କ ମନରେ ବିଭିନ୍ନ ପ୍ରକାର ଭାବନାସବୁ ଆସେ। ଫଳରେ ଏମାନେ ପରସ୍ପର ସାଙ୍ଗରେ ମିଶିବାକୁ ଭଲ ପାଆନ୍ତି। ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି। ଅନ୍ୟ ପ୍ରତି କୌତୂହଳ ଯୋଗୁଁ ଉଭୟେ ଦେହର ମିଳନ ପାଇଁ ମନ କରନ୍ତି। ମାତ୍ର ଏଥିପାଇଁ ଦେହ ଠିକ୍‌ଭାବରେ ପ୍ରସ୍ତୁତ ହୋଇ ନ ଥାଏ। ଫଳରେ ସ୍ୱାସ୍ଥ୍ୟହାନି ହୁଏ। ଏଇଥିପାଇଁ ଆମ

ଦେଶରେ ଆଇନ କରାଯାଇଛି ଯେ, ପୁଅକୁ ୨୧ ବର୍ଷ ଓ ଝିଅକୁ ୧୮ ବର୍ଷ ହେଲେ ସେମାନେ ବାହା ହେବେ।

ସପନି ଓ ନବୀନକୁ ବହୁତ ଲାଜ ଲାଗୁଥାଏ। କିନ୍ତୁ ନୂଆ ନୂଆ କଥା ଜାଣିବାକୁ ମନ ହେଉଥାଏ। ସେମାନେ ମନଦେଇ ସବୁ ଶୁଣୁଥାନ୍ତି।

ମୁନାଭାଇ କହିଲେ, ''ଆମ ଦେଶରେ ତୁମ ବୟସର ପିଲାଙ୍କୁ ଏସବୁ ବିଷୟରେ କିଛି କୁହାଯାଏ ନାହିଁ। ଆମେ ଭାବୁ ପିଲାମାନେ ବଡ଼ ହେଲେ ଆପେ ଆପେ ଜାଣିବେ। କିନ୍ତୁ କିଛି ନ ଜାଣି କୌତୂହଳୀ ହେଇ କେତେ ପୁଅଝିଅ ପରସ୍ପର ସହ ମିଶନ୍ତି। ଝିଅମାନେ ଗର୍ଭବତୀ ହେଇଯାଆନ୍ତି। ବିବାହ ଆଗରୁ ଝିଅଟିଏ ଗର୍ଭବତୀ ହେବା ବଡ଼ ଲାଜର କଥା, ଅପମାନର କଥା ଏବଂ ନିନ୍ଦାର କଥା। ଏଥିପାଇଁ ଝିଅର ଜୀବନ ତ ନଷ୍ଟ ହୁଏ, ପରିବାରରେ ମଧ୍ୟ ଶାନ୍ତି ରହେ ନାହିଁ। ତେଣୁ ଏ ବୟସରେ ପଢ଼ାପଢ଼ି, କାମଦାମ, ଖେଳାଖେଳି ଆଉ ବ୍ୟାୟାମରେ ମନ ଦେବ। ବୁଦ୍ଧିମାନ ଲୋକ, ଭଲ ଲୋକଙ୍କ ସାଙ୍ଗେ ମିଶିବ। ଏମିତି ଅଭ୍ୟାସ କରି ଦେହ ସୁଖ ଲାଗି ଇଚ୍ଛାକୁ ନିଜ ଅକ୍ତିଆରରେ ରଖିବାକୁ ହେବ। ଆତ୍ମସଂଯମ କରିବ। ବାପମା' ବା ଗୁରୁଜନମାନେ ପିଲାମାନଙ୍କୁ ଏ ବିଷୟରେ ବୁଝେଇଦେବା ଦରକାର। ତୁମେ ଆହୁରି ବଡ଼ ହେଲେ ବାହାସାହା ହବ। ତୁମର ନିଜର ପରିବାର ହବ। ପିଲାଛୁଆ ହେବେ। ନିଜେ ନିଜର ପରିବାରକୁ ପୋଷିବାକୁ ପଡ଼ିବ। ବର୍ତ୍ତମାନ ସେଥିପାଇଁ ତୁମେ ପ୍ରସ୍ତୁତ ହବ। ତେବେ ଯାଇଁ ତୁମର ବିବାହିତ ଜୀବନ ସୁଖକର ହବ। ମୁଁ ଯାହା କହିଲି ସେସବୁ ବୁଝିବାକୁ ଚେଷ୍ଟା କରିବ।

ମନରେ କିଛି ଖଟକା ଲାଗିଲେ ମତେ ପଚାରିବ। ନିଜ ବିଷୟରେ ଜାଣିବାରେ କିଛି ଲାଜ କରିବ ନାହିଁ। ଏବେ ମୁଁ ଯାଏ, କାମ ଅଛି'' କହି ସେ ଚାଲିଗଲେ।

ସପନି ଓ ନବୀନ ଚୁପ୍‌ଚାପ୍ ବସି ରହିଲେ। କିଛି ସମୟ ପରେ ସପନି ଘରକୁ ଗଲା। ବାଟସାରା ଭାବି ହେଲା। ନିଜ ଦେହ ବିଷୟରେ କେତେ ନୂଆ ନୂଆ କଥା ସେମାନେ ଆଜି ଜାଣିଲେ। ମୁନାଭାଇ କେତେ ଭଲରେ ବୁଝେଇଲେ। ସତରେ ଏସବୁ ଜାଣିବା ଦରକାର।

ରାତିରେ ସପନି ବିଛଣାରେ ପଡ଼ି ରହିଲା। ମୁନାଭାଇ କଥାଗୁଡ଼ାକ ତା' ମନକୁ ବାର ବାର ଆସିଲା। ସତରେ ସେମାନେ ଦିନେ ବଡ଼ ହେବେ। ନିଜ କଥା ନିଜେ ବୁଝିବେ। ସେଥିପାଇଁ ଏବେ ତିଆରି ହେବାକୁ ପଡ଼ିବ। ସେ ଖେଳିବ, ବ୍ୟାୟାମ କରିବ, ମନଦେଇ ପଢ଼ାପଢ଼ି କରିବ। ତା' କ୍ଲାସ୍‌ର ଜୟନ୍ତୀ, ଗୋପା, ଗାଁର ରମା ଆଉ ଗଉରୀ ବି ଏମିତି ବଡ଼ ହଉଛନ୍ତି। ରମା ଏଥର ଟିକେ ଡଉଲ ଡାଉଲ ଦେଖାଯାଉଥିଲା। କାଠି ପରି ହାତଗୋଡ଼ରେ ମାଉଁସ ଲାଗିଥିଲା। ମୁହଁଟା ସଫା ଆଉ ଚିକ୍କଣ ଦିଶୁଥିଲା। କିନ୍ତୁ ତା' ସାଙ୍ଗରେ ଆଗପରି କଜିଆ କଲା ନାହିଁ। ବଡ଼ମଣିଷଙ୍କ ପରି ତାଗିଦ୍ କଲା ଦେହର ଯତ୍ନ ନବାକୁ। ଆର ଥରକୁ ଗଲାବେଳକୁ ଆହୁରି ବଡ଼ ହେଇଯାଇଥିବ ସେ। ଏମିତି ଭାବୁ ଭାବୁ ନିଦ ହେଇଗଲା ସପନିକୁ।

ରମା ସପ୍ତମ ଶ୍ରେଣୀ ପାଠ ଶେଷ କଲାଣି। ତା'ର ମନ ସେ ଆହୁରି ପାଠ ପଢ଼ିବ। ସେଦିନ ରମା ସ୍କୁଲ୍‌ରୁ ଫେରି ଆସି ବହିପତ୍ର ରଖିଲା। ଗୋଡ଼ହାତ ଧୋଇ ବୋଉ

ପାଖରେ ବସି ପଡ଼ିଲା । କହିଲା, ‘‘ଆଉ ଦିନେ ହେଲେ ମୁଁ ଗଉରୀ ଜେଜେମା’ ସାଙ୍ଗେ କଥା ହେବି ନାହିଁ।’’ ମାଣିକ ପଚାରିଲେ, ‘‘କାହିଁକି ?’’ ରମା କହିଲା, ‘‘ତା’ ଜେଜେମା’ ବହୁତ ଖରାପ, ଆଜି ତାଙ୍କ ଘରୁ ଖାଲି ମତେ ତଡ଼ିଲେ ।’’ ମାଣିକ କହିଲେ, ‘‘କଅଣ ହେଲା କି ?’’ ରମା କହିଲା, ‘‘କିଛି ନାହିଁ, କ’ଣ ହବ ! ସ୍କୁଲ୍‌ରେ ଗଉରୀ ଜାମାରେ କେମିତି ରକ୍ତଦାଗ ଲାଗି ଯାଇଥିଲା । ଖେଳିଲାବେଳେ କୋଉଠି ଖଣ୍ଡିଆ ହେଇଯାଇଛି । ଫେରିଲାବେଳେ ମୁଁ ଗଉରୀକୁ ତା’ ଘରକୁ ଛାଡ଼ିବାକୁ ଗଲି । ଜେଜେମା’ ତାକୁ ଦେଖି ଘର ଭିତରକୁ ପଠେଇ ଦେଲେ । ମତେ ଖାଲି ତଡ଼ିଲେ । କାଲି ସ୍କୁଲ୍‌କୁ ଗଲାବେଳେ ତା’ ଘର ବାଟହେଇ ଯିବି କହି ମୁଁ ଚାଲି ଆସିଲି । ପଛରୁ ଜେଜେମା’ କହିଲେ, ତୋ’ର କାଲି ଆସିବା ଦରକାର ନାହିଁ। ତା’ ଦେହ ଭଲ ନାହିଁ। ସେ ଏବେ ସାତ ଦିନ ସ୍କୁଲ୍ ଯିବ ନାହିଁ। ମତେ ରାଗ ଲାଗିଲା । କଅଣ ଟିକେ ହେଇଛି କି ନାହିଁ, ସାତ ଦିନ ପାଠ ବନ୍ଦ । ତା’ ଜେଜେମା’ର ମୋଟେ ଇଚ୍ଛା ନାହିଁ ଗଉରୀ ପାଠ ପଢୁ ବୋଲି ।’’

ମାଣିକ ସବୁ ଶୁଣିଲେ କିଛି କହିଲେ ନାହିଁ। ରାତିରେ ମାଣିକ କହିଲେ, ‘‘ଶୁଣ୍, ତୁ କାଲି ଗଉରୀକୁ ସ୍କୁଲ୍‌କୁ ନବାକୁ ଯିବୁ ନାହିଁ।’’ ରମା କହିଲା, ‘‘କାହିଁକି ?’’ ମାଣିକ କହିଲେ, ‘‘ମୁଁ ଯାହା କହୁଛି ସେଇଆ କର । ଏତେ କାହିଁକି କାହିଁକି ହଅନା ।’’

ବାପା କହିବେ ‘‘ସବୁ କଥା କାହିଁକି ହଉଛି ବୁଝୁ । ଆକାଶ କାହିଁକି ନୀଳ ଦିଶୁଛି ? ତାରାମାନେ ଦିନରେ

ଦିଶୁ ନାହାନ୍ତି କାହିଁକି ? ଦର୍ପଣ ଆଗରେ ଠିଆହେଲେ ବାଁ ହାତ ଡାହାଣ ହାତ ପରି ଦିଶେ କାହିଁକି ? ଏସବୁ ଜାଣ, ବୁଝ। ଆଉ ତୁ କହିବୁ କାହିଁକି କାହିଁକି ହ'ନା। ହଉ ଆଉ କାହିଁକି କାହିଁକି ହେବି ନାହିଁ'' କହି ରାଗରେ ବୋଉ ଆଡ଼କୁ ପଛକରି ଶୋଇଲା ରମା।

ଆଠ ଦିନ ପରେ ଗଉରୀ ସ୍କୁଲ୍‌କୁ ଆସିଲା। ରମା ପଚାରିଲା, ''ତୋ'ର କ'ଣ ହେଇଥିଲା ? ଆଠ ଦିନ ପାଠ କାହିଁକି ବନ୍ଦ କଲୁ ?'' ''ଦେହ ଖରାପ ଥିଲା'' କହି ଗଉରୀ ଚୁପ୍ ରହିଲା। ରମାକୁ ଜଣାଗଲା ଗଉରୀ ଯେମିତି କଅଣ ଲୁଚଉଛି। ସେ ଆଉ କିଛି ପଚାରିଲା ନାହିଁ। ଭାବିଲା, ଗଉରୀ ତା'ର ଏତେ ସାଙ୍ଗ, ତା' ସାଥିରେ କପଟ କରୁଛି। ଅଭିମାନ କଲା। ଗଉରୀ ସାଙ୍ଗରେ ଭଲକରି କଥା କହିଲା ନାହିଁ। ଗଉରୀର ମନଦୁଃଖ ହେଲା। ଦିହେଁ ପିଲାଦିନୁ ଏତେ ସାଙ୍ଗ। ଏବେ କଅଣ ହେଲା, ରମା ଖାଲି କରଛଡ଼ା ଦଉଛି। ତା' ଦେହ ଖରାପ ହେଲାଦିନୁ ତାଙ୍କ ଘରକୁ ଆସି ନାହିଁ। ସେ ଉପରେ ପଡ଼ି କଥା କହିଲେ ବି ଭଲ କରି କଥା କହୁ ନାହିଁ। କାହାକୁ ଏ କଥା କହିବ ? ସାଙ୍ଗମାନେ ଜାଣିଲେ ଥଟ୍ଟା କରିବେ। କେତକୀ ତ' ବଡ଼ ଫାଜିଲ୍। କିଛି ଗୋଟାଏ ସେ ଅନୁମାନ କରିଛି। କାଲି ରମା ଛୁଟି ପରେ ଶୀଘ୍ର ଘରକୁ ଚାଲିଗଲା। ସେ ଏକୁଟିଆ ଆସୁଥିଲା। କେତକୀ ପଛରୁ କହିଲା, ''ମାଣିକଯୋଡ଼ି ଗୋ ମାଣିକଯୋଡ଼ି, ସାଥି ତୁମ କେଣେ ଯାଇଛି ଛାଡ଼ି।'' କ'ଣ ସେ କରିବ ? ମାଳତୀ ଭାଉଜଙ୍କୁ କହିବ। ତାଙ୍କଠୁଁ ପରାମର୍ଶ ନବ।

ମାଳତୀ ଭାଉଜ। ସାହିର ଦାମଭାଇଙ୍କ ସ୍ତ୍ରୀ। ଦି'ବରଷ ହେଲା ବାହା ହେଇଛନ୍ତି। ଛୁଆପିଲା କିଛି ନାହିଁ। ସାଙ୍ଗସାଥି କେହି ପଚାରିଲେ କହନ୍ତି, 'ଏବେ ନୁହଁ।' ଭାରି ଭଲ ମଣିଷଟିଏ। ବି. ଏ. ପାଶ୍ କରିଛନ୍ତି। ଘରକୁ ଛବିପରି ସଜେଇ ରଖିଥାଆନ୍ତି। ବହି ପଢ଼ନ୍ତି। କେତେ ସୁନ୍ଦର ସିଲେଇ କରନ୍ତି। କେତେ ପ୍ରକାର ରୋଷେଇ କରି ଜାଣନ୍ତି। ପୂଜା ପରବରେ କାଗଜ କାଟି ସୁନ୍ଦର ଫୁଲସବୁ କରନ୍ତି। ଘର ସଜାନ୍ତି। କିଛି କଥା ପଚାରିଲେ ଭଲକରି ବୁଝେଇ ଦିଅନ୍ତି। ରାଗନ୍ତି ନାହିଁ କି ଚିଡ଼ନ୍ତି ନାହିଁ। ଗାଁସାରା ଝିଅବୋହୂ ତାଙ୍କ ପାଖକୁ ଯାଆନ୍ତି। ପରାମର୍ଶ ନିଅନ୍ତି। ଖାଲି ସାବି ଆଈ ତାଙ୍କ ଉପରେ ସବୁବେଳେ ଖର ଖର ହୁଏ। କହେ ଝିଅବୋହୂଗୁଡ଼ାଙ୍କୁ ଅବାଟକୁ ନଉଛି ସେ ଟୋକିଟା। ନିଜେ ତ ବୁଢ଼ୀ ହବାଯାକେ ଟୋକାଙ୍କ ସାଙ୍ଗେ ଧେଇ ଧେଇ ହଉଥିଲା। ଏବେ ଏ ଗାଁର ଝିଅଗୁଡ଼ାଙ୍କୁ ସେଇ ମସୁଧା ଦଉଛି। ବାଞ୍ଝି ନ ହେଇଥିଲେ ଆହୁରି କେତେ ଫୁଲେଇ ହଉଥାଆନ୍ତା ! ମାଳତୀ ଭାଉଜ ଏସବୁ ଜାଣନ୍ତି। ହସନ୍ତି, କିଛି କହନ୍ତି ନାହିଁ।

ଗଉରୀ ତାଙ୍କ ପାଖକୁ ଗଲା। ନିଜ ମନଦୁଃଖ କଥା କହିଲା। ଠିକଣା ହେଲା, ପରଦିନ ରବିବାର। ଦି'ପହରେ ମାଳତୀ ଭାଉଜ ତାଙ୍କ ଘରକୁ ଡକେଇ ଆଣିବେ। ଗଉରୀ ମଧ ସେତିକିବେଳକୁ ଯିବ।

ରବିବାର ଦି'ପହର। ରମା ମାଳତୀ ଭାଉଜଙ୍କ ଘରେ ପହଞ୍ଚିଲା। ଭାଉଜ ଥଟ୍ଟାରେ କହିଲେ, "ତମ ଯୋଡ଼ି କୁଆଡ଼େ ଗଲେ ? ଯୋଡ଼ିକୁ ଛାଡ଼ି କେମିତି ଆସିଲ ?"

ରମା କହିଲା, "ତମେ ତ ମତେ ଗଉରୀକୁ ଡାକି ଆଣିବା କଥା କହି ନ ଥିଲ।" ରମା ଅଡୁଆରେ ପଡ଼ିଗଲା। ଚୁପ୍ ରହିଲା। ଏତିକିବେଳକୁ ଗଉରୀ ଆସି ପହଞ୍ଚିଲା। ଭାଉଜ କହିଲେ, "ହେଇଟି ତମ ଯୋଡ଼ି ଆସିଗଲେ। ଆସ ବସ।"

ରମା ପଚାରିଲା, "କାହିଁକି ଡାକିଥିଲ ?"

ମାଳତୀ କହିଲେ, "ପନ୍ଦର ଦିନ ହେଲାଣି। ଦି' ସାଙ୍ଗଙ୍କର ଭାଉଜଟାକୁ ଦେଖି ଆସିବା ପାଇଁ ମନ ହେଲା ନାହିଁ? ଏଇ କଥା ପଚାରିବାକୁ ଡାକିଥିଲି।"

ରମା ଚୁପ୍ ରହିଲା। ଗଉରୀ କହିଲା, "ପନ୍ଦର ଦିନ ହେଲା ସେ ଆମ ଘରକୁ ଆସି ନାହିଁ। ଆମେ ସାଙ୍ଗ ହେଇ କୁଆଡ଼େ ଯାଇନୁ।"

"କାହିଁକି ? କଅଣ ଅସୁବିଧା ହେଲା ?" ଭାଉଜ ପଚାରିଲେ।

"ମୋ ଦେହ ଖରାପ ଥିଲା। ଜେଜେମା' ଆଉ ବୋଉ ମତେ ସ୍କୁଲ୍‌କୁ ଛାଡ଼ିଲେ ନାହିଁ। ସାତ ଦିନ ପରେ ମୋ ଦେହ ଭଲ ହେଲା। ତା'ପରେ ମୁଁ ସ୍କୁଲ୍ ଗଲି। ବୋଉ କହିଲା, କିଏ କିଛି ପଚାରିଲେ କହିବୁ ଦେହ ଖରାପ ଥିଲା। ଆଉ କିଛି କହିବୁ ନାହିଁ। ରମା ପଚାରିଲାରୁ ମୁଁ ସେଇଆ କହିଲି। ସେ କ'ଣ ଭାବିଲା କେଜାଣି ସେଇଦିନୁ ମୋ ସାଙ୍ଗେ ଭଲକରି କଥା କହୁ ନାହିଁ କି ଆମ ଘରକୁ ଯାଉ ନାହିଁ" ଗଉରୀ କହିଲା।

"ତମେ କହିଲ ଭାଉଜ, ଆମେ ଏତେ ସାଙ୍ଗ। କିନ୍ତୁ ମୁଁ ଯେତେ ପଚାରିଲି ଖାଲି କହିଲା ଦେହ ଖରାପ

ଥିଲା, ଦେହ ଖରାପ ଥିଲା। ଜର ନା ଝାଡ଼ା ନା ବଥ, କ’ଣ ଗୋଟାଏ ହେଇଥିବ ତ? ସେକଥା ନ କହି ଖାଲି ଦେହ ଖରାପ କହିହେଲା। ଏଥିରେ ମୁଁ ରାଗିବି ନାହିଁ?’’ ରମା କହିଲା।

‘‘ମତେ ଯୋଉ ବେମାରୀ ହେଇଥିଲା ଶୁଣିଲେ ତମେ ବି ଡରିଯିବ ଭାଉଜ। ମୁଁ ତ’ ଡରିକରି ଛାନିଆ। ମୋ ଦେହରୁ ଖାଲି ରକ୍ତ ଗଲା। ମତେ ଗୋଟାଏ ରେ ଏକୁଟିଆ ରଖିଲେ। ସେ ଘରେ ଖାଲି ଜେଜେମା’ ରହିଲା। କେହି ମତେ ଛୁଇଁଲେ ନାହିଁ କି ମୁଁ କାହାକୁ ଛୁଇଁଲି ନାହିଁ। ଗାଧୁଆ ପାଧୁଆ ସବୁ ବନ୍ଦ। ଛଅ ଦିନ ପରେ ମୋ ଦେହ ଶୁଖିଲା। ସାତ ଦିନ ଦିନ ଗାଧୁଆ ପାଧୁଆ କଲି। ଧୋବଣୀ ଆସି ଲୁଗା ସଫା କରିଦେଲା। ଆଈଙ୍କ ସାଙ୍ଗେ ମୁଁ ମନ୍ଦିର ଗଲି। ତା’ପରେ ସମସ୍ତେ ମତେ ଛୁଇଁଲେ। ମୁଁ ସବୁ ଛୁଇଁଲି। ତା’ପରଦିନ ସ୍କୁଲ୍ ଗଲି। ଏମିତି ରୋଗକଥା କାହାକୁ କହିବି ଭଲା! ସେଥିରେ ପୁଣି ବୋଉ ମନା କରିଛି।’’

ମାଳତୀ ଭାଉଜ ହସି ପକେଇଲେ। କହିଲେ, ‘‘ଓହୋ ଏଇ ରୋଗ ତମର ହେଇଥିଲା? ଏଥର ସବୁ ମାସରେ ତମର ଏ ରୋଗ ହବ।’’

‘‘ସବୁ ମାସରେ ଏମିତି ହବ?’’ - କହି ଗଉରୀ ମୁହଁ ଶୁଖେଇଦେଲା।

‘‘ମୁହଁ କଅଣ ଶୁଖଉଛ? ଏ ତ ଖୁସିର କଥା। ତମର ନାବାଳିକି କଟିଗଲା। ଏଥର ମାଉସୀ ତମ [illegible] ବରଘର ଖୋଜିବେ। ଆମେ ଭୋଜି ଖାଇବା।’’

ଗଉରୀ ଲାଜେଇଗଲା । କହିଲା, "ଧେତ୍, ତମର ସବୁଥିରେ ଖାଲି ଥଟ୍ଟା !"

"ମନଖୁସି ହେଇଗଲା ନା ! ହେଲେ ତମକୁ ସବୁର କରିବାକୁ ପଡ଼ିବ । ଅଠର ବର୍ଷ ନ ହେଲେ ଯଦି ବାହାହବାକୁ ହମ ହମ ହବ ନା ହାତରେ ହାତକଡ଼ି ପଡ଼ିଯିବ । ଏଇଟା ସରକାରୀ ନିୟମ ଜାଣିଥା" - ମାଳତୀ କହିଲେ ।

"ଏମିତି ଥଟ୍ଟା କଲେ ମୁଁ ପଳେଇବି କହୁଛି" ଗଉରୀ କହିଲା ।

ଭାଉଜ- ଥଟ୍ଟା ନୁହଁ ହେ ମୁଁ ସତ କହୁଛି । ତମେ ଯୁବତୀଟିଏ ହେଲ । ଏବେ ଛୁଆ ଜନ୍ମ କରିବାକୁ ତମ ଦେହ ପ୍ରସ୍ତୁତ ହେଇଗଲା । ଏବେ ଯଦି ବାହା ହବ ନା ଆଉ ବର୍ଷକୁ ଛୁଆ କାଖେଇ ବୁଲିବ । କେବେ ସେ ଭୁଲ୍ କରିବ ନାହିଁ । ପାଠଶାଠ ପଢ଼ି ସାର, ତମ ଦେହ ଠିକଣା ହେଇ ବଢ଼ୁ । ତେବେ ଯାଇ ବାହା ହବାକୁ ମନ କରିବ ।

ରମା- ଭାଉଜ, ପ୍ରତି ମାସରେ ଗଉରୀକୁ ରୋଗ କାହିଁକି ହବ ?

ଭାଉଜ- ଏଇଟା ରୋଗ ନୁହେଁ । ଆମେ ଝାଡ଼ା ଯାଉଛୁ । ପରିସ୍ରା ଯାଉଛୁ । ଆମ ଦେହର ଅଦରକାରୀ ପଦାର୍ଥ ଏହିପରି ବାହାରି ଯାଉଛି । ଇଏ ବି ସେମିତି । ସାଧାରଣତଃ ପ୍ରତି ୨୮ ଦିନ ବା ୩୦ ଦିନ ପରେ ଥରେ ଏମିତି ହବ । ପ୍ରତି ଥର ୩/୪ ଦିନ ଧରି ଦେହରୁ ରକ୍ତସ୍ରାବ ହବ । ତା'ପରେ ବନ୍ଦ ହେଇଯିବ ।

ରମା କହିଲା, "ଏମିତି କାହିଁକି ହୁଏ ଭାଉଜ ? ଏମିତି କାହିଁକି ହୁଏ, ପଚାରିଲେ ତୁମେ ରାଗିବ ନାହିଁ

ତ ? ବୋଉକୁ ଯଦି କିଛି ପଚାରିବି ସେ ଖାଲି ରାଗିବ, କହିବ ସବୁବେଳେ କାହିଁକି କାହିଁକି ହଅ ନା ।''

ମାଳତୀ କହିଲେ, ''ରାଗିବି କାହିଁକି ? ଏସବୁ ତମର ଜାଣିବା କଥା । ମାଉସୀ ଭାବନ୍ତି, ତମେ ପିଲାଲୋକ, ସବୁ ପରେ ଜାଣିବ । ଏବେ ଶୁଣ, କାହିଁକି ଏମିତି ହୁଏ । ୧୧/୧୨ ବର୍ଷ ହେଇଗଲେ ଝିଅମାନଙ୍କ ଦେହ ଛୁଆଜନ୍ମ ଦେବାକୁ ପ୍ରସ୍ତୁତ ହେଇଯାଏ । ସେଇଠୁ ଏମିତି ହୁଏ । ବାହା ବୟସ ପର୍ଯ୍ୟନ୍ତ ଜାଗ୍ରତ ହେବ । ଗାଁଗହଳରେ 'ଝିଅ ଘରେ ରହିଲା' ବୋଲି କହନ୍ତି । ଘରେ ରହିବା ବା ବଡ଼ ହେବାର ଏହା ଲକ୍ଷଣ । ଏଥର ଝିଅମାନେ ଯୁବତୀ ହେଲେ ।''

ଗଉରୀ- ପ୍ରତି ମାସରେ ଏମିତି ହେଲେ ଦେହ ଖରାପ ହବ ନାହିଁ ? ଏସବୁ କୋଉଠୁ ଆସେ ?

ମାଳତୀ- ଝିଅମାନଙ୍କ ତଳିପେଟରେ ଗୋଟିଏ ଛୋଟ ମୁଣା ଅଛି । ମା' ଦେହରେ ଛୁଆ ଏଇ ମୁଣା ଭିତରେ ରହି ବଢ଼େ । ଏହାକୁ ଗର୍ଭମୁଣା, ଗର୍ଭାଶୟ ବା 'ଜରାୟୁ' କହନ୍ତି ।

ଗଉରୀ- ପେଟରେ ମୁଣା ଭିତରେ ରହି ଛୁଆ ବଢ଼େ ?

ମାଳତୀ- ହଁ, ଆହୁରି ଶୁଣ । ଏହି ମୁଣାର ଉପରମୁଣ୍ଡରେ ଦୁଇପଟକୁ ଦୁଇଟି ନଳୀ ଝୁଲୁଥାଏ । ନଳୀ ଦୁଇଟିକୁ ଡିମ୍ବବାହୀ ନଳୀ କହନ୍ତି । ଗର୍ଭମୁଣା ଆଉ ଏଇ ନଳୀକୁ ଲାଗି ଦୁଇପଟେ ଦୁଇଟି ଛୋଟ ଥଳୀ ଅଛି । ଏ ଦୁଇଟିର ନାଁ 'ଡିମ୍ବକୋଷ' । ଝିଅ ସାବାଳିକା ହେଲେ ପ୍ରତି ମାସରେ ଯେକୌଣସି ଗୋଟିଏ ଡିମ୍ବକୋଷରୁ ଗୋଟିଏ ବନିଲା ଡିମ୍ବ ବାହାରେ । ଡିମ୍ବବାହୀ ନଳୀର ଝୁଲାମୁହଁ ଦେଇ ଗର୍ଭମୁଣା ଆଡ଼େ

କହିବ ସବୁବେଳେ କାହିଁକି କାହିଁକି ହଅ ନା ।''

ମାଳତୀ କହିଲେ, ''ରାଗିବି କାହିଁକି ? ଏସବୁ ତମର ଜାଣିବା କଥା । ମାଉସୀ ଭାବନ୍ତି, ତମେ ପିଲାଲୋକ,

ରମା- ଏ ଅଜବ କଥା ତ!
ଗଉରୀ- ସେଇଠୁ କ'ଣ ହୁଏ?
ମାଳତୀ- ୧୩/୧୪ ବର୍ଷ ହେଇଗଲେ ପୁଅମାନେ ବି ସାବାଳକ ହୁଅନ୍ତି। ସେମାନଙ୍କ ପରିସ୍ରାନଳୀ ଦେଇ ଏକପ୍ରକାର ଅଠାଳିଆ ପଦାର୍ଥ ବାହାରେ। ଏହାକୁ 'ବୀର୍ଯ୍ୟ' କହନ୍ତି। ବୀର୍ଯ୍ୟରେ ଅସଂଖ୍ୟ ଶୁକ୍ରକୀଟ ଥାଆନ୍ତି। ଏଗୁଡ଼ିକ ଦ୍ୱାରା ଛୁଆ ସୃଷ୍ଟି ହୁଏ। ଝିଅ ଦେହର ଡିମ୍ୱଟି ଡିମ୍ୱବାହୀ ନଳୀ ଦେଇ ଗର୍ଭାଶୟକୁ ଯାଏ, ଜାଣିଲ! ଏହି ଦିନ ଝିଅଟିର ପୁଅ ସହିତ ଦେହର ମିଳନ ହେଲେ ଶୁକ୍ରକୀଟ ଗର୍ଭାଶୟ ଭିତରକୁ ଯାଇ ଡିମ୍ୱ ଭିତରେ ପଶିଯାଏ। ଡିମ୍ୱ ଓ ଶୁକ୍ର ମିଶି ଛୁଆଟିଏ ହୁଏ। ଛୁଆର ଏହି ପ୍ରଥମ ଅବସ୍ଥାକୁ 'ଭ୍ରୁଣ' କହନ୍ତି। ଭ୍ରୁଣଟି ମା'ର ଗର୍ଭାଶୟ କାନ୍ଥରେ ଅଧା ପୋତି ହୋଇ ରହି ବଢ଼େ। ଝିଅମାନେ ବଡ଼ହେବା ପରେ ପ୍ରତି ମାସରେ ଛୁଆକୁ ସାଇତି ରଖିବା ପାଇଁ ଗର୍ଭାଶୟ କାନ୍ଥଗୁଡ଼ିକ ତିଆରି ହୋଇ ରହେ।
ରମା- କିଏ ତିଆରି କରେ?
ମାଳତୀ- କିଏ ଆଉ କରିବ? ଦେହ ନିଜେ ନିଜେ କରେ। ଗର୍ଭାଶୟ କାନ୍ଥରେ ପରସ୍ତ ପରସ୍ତ ହୋଇ ପାତଳା ଲେପସବୁ ସୃଷ୍ଟି ହୁଏ। ଏହାକୁ 'ଶୈଶ୍ମିକ ଝିଲ୍ଲୀ' କହନ୍ତି। ଛୁଆ ହେଲେ ତାକୁ ଖାଦ୍ୟ ଯୋଗାଇବା ପାଇଁ ଏହି କାନ୍ଥରେ ରକ୍ତନଳୀମାନ ସୃଷ୍ଟି ହୁଏ। ପୁରୁଷସହ ଦେହର ମିଳନ ନ ହେଲେ ଶୁକ୍ରକୀଟ ଗର୍ଭାଶୟ ଭିତରେ ପହଞ୍ଚେ ନାହିଁ। ତେଣୁ ଗର୍ଭ ମଧ୍ୟ ହୁଏ ନାହିଁ। ଗର୍ଭ ନ ହେଲେ ଡିମ୍ୱ, ଶୈଶ୍ମିକ ଝିଲ୍ଲୀ, ରକ୍ତବାହୀ ନଳୀ ସବୁ କିଛି ଦରକାରରେ

ଲାଗେ ନାହିଁ। ଝିଅମାନଙ୍କର ପରିସ୍ରାଦ୍ୱାର ତଳକୁ ଆଉ ଗୋଟିଏ ଦ୍ୱାର ଅଛି। ଏସବୁ ସେଇବାଟେ ଝରି ବାହାରିଯାଏ। ରକ୍ତ ପରି ଦିଶେ। ୨୮ ବା ୩୦ ଦିନ ବ୍ୟବଧାନରେ ହେଉଥିବାରୁ ଏହାକୁ ମାସିକ ରଜଃସ୍ରାବ ବା 'ମାସିକିଆ' କହନ୍ତି। ପେଟରେ ଛୁଆ ରହିଲେ ବା ଗର୍ଭ ହେଲେ ଶୈଶ୍ମିକ ଝିଲ୍ଲୀ ଓ ରକ୍ତବାହୀ ନଳୀ ଛୁଆ କାମରେ ଲାଗେ। ମାସିକିଆ ବନ୍ଦ ହୋଇଯାଏ। ଏଇଟା ଝିଅମାନଙ୍କ ଦେହର ଗୋଟିଏ ସାଧାରଣ କଥା।

ଗଉରୀ- ତା'ହେଲେ ସେମାନେ ମତେ କାହିଁକି ଅଗାଧୁଆ ରଖିଲେ? କିଛି ଛୁଇଁବାକୁ ଦେଲେ ନାହିଁ?

ମାଳତୀ- ଜେଜେମା' ଆଉ ବୋଉ ତ ଆଗକାଳର ମଣିଷ। ସେମାନେ ନିଜେ ଏଇ ବିଧିବିଧାନସବୁ ପାଳି ଆସିଛନ୍ତି। ତମକୁ ବି ଶିଖେଇଲେ। ଅବଶ୍ୟ ଏଇ ୩/୪ ଦିନ ପାଣିରେ ପହଁରିବ ନାହିଁ। ଭାରି ଜିନିଷ ଉଠେଇବ ନାହିଁ। ପାହାଚ ଚଢ଼ିବ ନାହିଁ। କିନ୍ତୁ ଶୀତଦିନେ ଉଷୁମ ପାଣିରେ ଆଉ ଖରାଦିନେ ଥଣ୍ଡା ପାଣିରେ ଗାଧୋଇବ। ପରିଷ୍କାର ପରିଚ୍ଛନ୍ନ ରହିବ। ପିନ୍ଧୁଥିବା କନାକୁ ୩/୪ ଥର ସଫା କରିବ, ବଦଳାଇବ। ନ ହେଲେ ସେ ଜାଗାସବୁ କୁଣ୍ଡେଇ ହବ, ଘା' ପରି ହୋଇଯିବ।

ଗଉରୀ- ମୋ ସାନ ପିଉସୀର କିଛି ପିଲାପିଲି ନାହିଁ। ଚାରି ବର୍ଷ ହେଲା ବାହା ହେଲାଣି। କେତେ ଦିଅଁଦେବତା କଲାଣି, କିଛି ହଉ ନାହିଁ। ତା' ଶାଶୁ ତାକୁ ବହୁତ ହୀନିମାନ କରନ୍ତି। ଥରେ କହିଲେ, "ଛୁଆ ନ ହେଲେ ମୋ ପୁଅକୁ ଆଉ ଗୋଟାଏ ବାହା ଦେବି।" ବାପା, ବୋଉ ଓ ଜେଜେମା' ବହୁତ ମନ ଖରାପ କଲେ।

ମାଳତୀ- ପିଲାପିଲି ନ ହେଲେ ପ୍ରାୟ ସମସ୍ତେ ସ୍ତ୍ରୀଲୋକଙ୍କ ଦୋଷ ଦିଅନ୍ତି; କିନ୍ତୁ ଏ ଟା ଠିକ୍ ନୁହେଁ। ପୁରୁଷଙ୍କ ପାଖରେ ଦୋଷ ଥିଲେ ମଧ୍ୟ ଛୁଆ ହୁଏ ନାହିଁ। ପୁରୁଷଙ୍କ ଦୋଷ ଥାଇପାରେ ବୋଲି ସାଧାରଣ ଲୋକ ଭାବିପାରନ୍ତି ନାହିଁ। ପିଲାପିଲି ନ ହେଲେ ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ପରୀକ୍ଷା କରିବା ଦରକାର। କାହାଠାରେ ଦୋଷ ଅଛି, ଜାଣି ଠିକ୍‌ଭାବେ ଚିକିତ୍ସା କଲେ ଛୁଆପିଲା ହବ। ଗୁଣିଗାରେଡ଼ି, ଦିଅଁଦେବତାରେ ଦେହର ଦୋଷ ଦୂର ହବ ନାହିଁ। ଡାକ୍ତରୀ ଚିକିତ୍ସା କଲେ ଏସବୁ ଦୂର ହବ। ଦିଅଁଦେବତା ଆମର ମଙ୍ଗଳ ମନାସନ୍ତି ବୋଲି ଆମର ବିଶ୍ୱାସ। ସେଇଥିପାଇଁ ତାଙ୍କ ପାଖରେ ଆମେ ଦୁଃଖ ଜଣାଉ, ମନକୁ ଶାନ୍ତ କରୁ।

ରମା- ପିଲା ନ ହେଲେ ନାହିଁ, କଅଣ ସେଥିରେ ଅସୁବିଧା ହେଇଯିବ ଯେ! ତମର ତ ପିଲା ନାହିଁ। ତମେ ତ ଭଲରେ ଅଛ।

ମାଳତୀ- ନା ନା। ସବୁ ପରିବାରରେ ଗୋଟିଏ ବା ଅତି ବେଶୀ ହେଲେ ଦୁଇଟି ପିଲା ହେବା ଦରକାର। ପିଲାଙ୍କର ହସକାନ୍ଦ, ପରିବାରରେ ଆନନ୍ଦ ଆଣେ। ଛୁଆ ନ ହେଲେ ପରିବାର ଅଧାପନ୍ତରିଆ ରହିଯାଏ। ବୟସ ହେଇଗଲେ ନିରାଶ ଲାଗେ। ପିଲାଟିଏ ପାଳିବା ଭିତରେ ବାପମା'ଙ୍କ ଭିତରେ ବେଶୀ ବୁଝାମଣା ହୁଏ। ଦିହେଁ ଦିହିଁଙ୍କୁ ବେଶୀ ଭଲ ପାଆନ୍ତି। ସ୍ନେହ, ଆଦର କରନ୍ତି। ଗୋଟିଏ ବା ଦୁଇଟି ପିଲା ଯଥେଷ୍ଟ। ଏମାନଙ୍କର ଯତ୍ନ ଠିକ୍‌ଭାବେ ନେଇ ହବ। ପିଲାଟିଏ ଭଲଭାବରେ ମଣିଷ କରିପାରିଲେ ମନରେ ତୃପ୍ତି ମିଳେ। ଜୀବନ ସାର୍ଥକ ହେଲାପରି ମନେହୁଏ।

ଗଉରୀ- ଭାଉଜ, ତମେ ପିଲାପିଲି ପାଇଁ ଡାକ୍ତର ଦେଖଉନ ?
ମାଳତୀ- ମୋର ତ କିଛି ଦୋଷ ନାହିଁ। ତମ ଭାଇ ଆଉ ମୁଁ ମିଶି ଠିକଣା କରିଛୁ ବାହାଘର ଦି'ବର୍ଷ ପୂରିଲେ ଯାଇ ପିଲା ପାଇଁ ମନ କରିବୁ। ଦି'ବର୍ଷ ପୂରୁ। ପିଲାଟିଏ ମଣିଷ କରିବା ପାଇଁ ବାପମା'ଙ୍କୁ ପ୍ରସ୍ତୁତ ହବାକୁ ପଡ଼ିବ। ରହିବାକୁ ସୁବିଧା ନ ଥିବ, ଖାଇବାକୁ ନ ଥିବ, ଦେଖିଲାବେଳକୁ କୋଳକୁ ପିଲା ଆସି ଗଲାଣି। ଠିକ୍‌ଭାବରେ ପିଲାଟିର ଯତ୍ନ ନେଇ ହବ ନାହିଁ। ଏମିତି କରିବା ପିଲା ପ୍ରତି ଅନ୍ୟାୟ। ସେଥିପାଇଁ ବାହାହବା ସାଙ୍ଗେ ସାଙ୍ଗେ ପିଲା ନ ହେଇ ଦି'ବର୍ଷ ପରେ ହେବା ଭଲ। ଅତି କମ୍‌ରେ ବର୍ଷକ ପରେ ପିଲାକଥା ମନକୁ ଧରିବ। ଆମେ ଠିକ୍ କରିଛୁ ପୁଅ ହଉ ବା ଝିଅ ହଉ ଆମର ଗୋଟିଏ ପିଲା ହବ। ତାକୁ ଭଲକରି ମଣିଷ କରିବୁ। ବଣର ରାଜା ସିଂହ ପରା ଗୋଟିଏ ଛୁଆ ଜନ୍ମ କରେ।
ଗଉରୀ- ଭଲ କରିଚ। ଆମ ଘରେ ଦେଖୁନ। ଦି'ବଖରା ଘରକୁ ବାପା, ବୋଉ, ଜେଜେମା' ଆଉ ଆମେ ତିନି ଭାଇଭଉଣୀ। ସବୁବେଳେ ଗେଞ୍ଜାଗେଞ୍ଜି। କୁଣିଆ ମଇତ୍ର ଆସିଗଲେ ତ ଦହଗଞ୍ଜ କହିଲେ ନ ସରେ।
ମାଳତୀ- ଆଗେ ଲୋକେ ଭାବୁଥିଲେ ପିଲାଛୁଆ ହେବା ଭଗବାନଙ୍କର ଇଚ୍ଛା। ଆମେ ନ ଚାହିଁଲେ ଆମର ପିଲା ହବ ନାହିଁ। ସେଥିପାଇଁ ଉପାୟ ଅଛି। ଏ କଥା ସେମାନେ ଜାଣି ନ ଥିଲେ। ସେଥିପାଇଁ ସମସ୍ତଙ୍କର ବେଶୀ ପିଲାପିଲି ହେଉଥିଲେ। ଆମ ସାହିସାରା ଦେଖୁନ କେବଳ ରମା ପରିବାରଟି ଛୋଟ। ଗୋଟିଏ ଭାଇ ଗୋଟିଏ ଭଉଣୀ।

ବାକି ସମସ୍ତଙ୍କଠ ତିନିରୁ ବେଶୀ ଛୁଆ । ଆମ ବେଳ ତ ନିଆରା । ଆମେ ନ ଚାହିଁଲେ ଆମର ପିଲା ହବ ନାହିଁ। ପିଲା ନ ହେବା ପାଇଁ ସହଜ ଉପାୟ ରହିଛି। ଏସବୁ ଜାଣିବା ପାଇଁ ସୁବିଧା ମିଳୁଛି। ସେସବୁ ଆମେ ଜାଣିବା, ଶିଖିବା ଆଉ କରିବା । ଆମର ଯଦି ବେଶୀ ପିଲାପିଲି ହବ, ଲୋକେ ହସିବେ, କହିବେ ମୂର୍ଖଟା, ବୋକାଟା । ଯୁବତୀଟିଏ ହେଇଗଲ ବୋଲି ନୂଆ ଶାଢ଼ୀ ଆଉ ନୂଆ ଗହଣା ପିନ୍ଧି ବେଦୀ ଉପରେ ତୁନ୍‌ତାନ୍ ବସି ପଡ଼ିବ ନାହିଁ। ପାଠଶାଠ ପଢ଼ି ସାର, ନିଜ ଗୋଡ଼ରେ ନିଜେ ଠିଆ ହବାର ଶକ୍ତି ରଖ । ମା' ହେଲେ କି କି ଦାୟିତ୍ୱ ତୁଲେଇବାକୁ ପଡ଼ିବ, କେମିତି ତୁଲେଇବ, ସେସବୁ ବାଟ ଜାଣ । ତା'ପରେ ବାହା ହବାକୁ ମନ କରିବ । ମାଉସୀ ସାବି ଆଇଠୁ ମସୁଧା ନଉଥାଆନ୍ତୁ, ତମେ ମୋଠୁ ମସୁଧା ନିଅ । କିଏ ଜିତୁଛି ଦେଖିବା ।

ରମା- ଆମେ ତମଠୁ ମସୁଧା ନବା, ଆଉ ଜିତିବା । କ'ଣ କହୁଛୁ ଗଉରୀ ? ଗଉରୀ 'ହଁ' କଲା ।

ରମା କହିଲା, "ବୁଝିଲ ଭାଉଜ, ଆମ ପାଠରେ ଅଛି- 'କପୋତ ପକ୍ଷୀ ଗୁରୁ ମୋର ।' ମୁଁ କହିବି, 'ମାଳତୀ ଫୁଲ ଗୁରୁ ମୋର ।' ତିନିହେଁ ପାଟିକରି ହସିଉଠିଲେ । ରମା ଆଉ ଗଉରୀ ଭିତରେ ଥିବା ଅଭିମାନ କେତେବେଳୁ ପଳାଇଛି ।

ଦିନ ଗଡ଼ି ଚାଲିଲା । ରମା ଓ ଗଉରୀ ସାଥିହୋଇ ମାଟ୍ରିକ୍ ପାଶ୍ କଲେ । ଗାଁରେ କଲେଜଟିଏ ଖୋଲିଥିଲା । ଦିହେଁ ପାଠ ପଢ଼ିଲେ । ବି. ଏ. ପାଶ୍ କଲେ । ଦିହିଁଙ୍କର

ମନ ଆହୁରି ପଢ଼ିବେ। ଏମ୍. ଏ. ପାଶ୍ କରିବେ। ଗଉରୀ ବଡ଼ ଝିଅ। ତା'ପରେ ସଉରୀ ଆଉ କାନ୍ଦୁରି। ବଡ଼ ଝିଅକୁ ହାତକୁ ଦି' ହାତ କରିଦେଲେ ସାନ ଝିଅ ପାଇଁ ସଜିଲ ହେବେ। ଏଇ ବିଚାର ଦେଲେ ସାବି ଆଈ। ଗଉରୀ ଜେଜେମା' ମନକୁ କଥାଟା ପାଇଲା। ଗଉରୀର ବାହାଘର ହେଲା।

ରମା ଏକୁଟିଆ ହେଇଗଲା। ସଉରୀ ହାତରେ ବହିପତ୍ର ମଗେଇଲା। ଓଡ଼ିଆରେ ଏମ୍. ଏ. ପରୀକ୍ଷା ଦବାକୁ ପଢ଼ାପଢ଼ି କଲା। ଗଉରୀ ବାହା ହେଇଗଲା। ରମାସାଙ୍ଗର ଆଉ ସବୁ ଝିଅ କେବେଠୁଁ ବାହା ହେଲେଣି। କୋଳରେ ଛୁଆଧରି ବାପଘର ବୁଲି ଆସୁଛନ୍ତି। କିଏ ଭଲରେ ଅଛି। କିଏ ମନ୍ଦରେ ଅଛି। ମାଣିକଙ୍କୁ ଆଉ ନିଦ ହେଲା ନାହିଁ। ରମାବାପାଙ୍କୁ ବସେଇ ଉଠେଇ ଦେଲେ ନାହିଁ ସେ। ରମା ପାଇଁ ପାତ୍ରଟିଏ ଖୋଜିବାକୁ, ଚିହ୍ନାଜଣା ସମସ୍ତଙ୍କୁ କହିଲେ।

ଏମିତି ଦିନେ ସଉରୀ ସାଙ୍ଗେ କଥା ହଉ ହଉ କହିଲେ, "ଶୁଣ୍‌, ରମା କ'ଣ ଆଉ ବାହା ହବ ନାହିଁ। ତୋର ଚିହ୍ନାଜଣା କିଏ ଥିବ ଟିକେ ରମା ପାଇଁ ବୁଝୁନୁ!" ସଉରି କହିଲା, "ମୁଁ ତିନି ଚାରି ଦିନ ହେଲା କଟକ ଯାଇଥିଲି। ସପନି ଘରକୁ ଯାଇଥିଲି। ସପନି ବି. ଏ. ପାଶ୍ କରି କଟକରେ ଚାକିରି କରୁଛି। ଆଉ କ'ଣ ପରୀକ୍ଷା ଦବ ବୋଲି ପଢୁଛି। ମାଉସୀ ତା' ପାଇଁ ଝିଅଟିଏ ଦେଖିବାକୁ କହୁଥିଲେ। ଆସନ୍ତା ସୋମବାର ଦିନ ଯିବି। କଥା ପକେଇବି ?"

ମାଣିକ କହିଲେ, "କେତେ ଦିନ ହେଲା ପିଲାଟାକୁ ମୁଁ ଦେଖି ନାହିଁ। ମତେ କିନ୍ତୁ ପିଲାଟି ଭାରି ପସନ୍ଦ।

ହେଲେ ସେମାନେ ସହର ବଜାରରେ ରହିଲେଣି। ଆମେ ଗାଉଁଲି ଲୋକ। ଆମକୁ ନାକ ଟେକିବେ। ସେଥିରେ ପୁଣି ପୁଅ ଯୋଗ୍ୟ ହେଇଛି। କେତେ ଯାନିଯଉତୁକ ଖୋଜିବେ। ଆମ ଘରେ ବସିବାକୁ ସେ କ'ଣ ରାଜି ହେବେ?''

ସଉରୀ- ଏତେ ସୁନ୍ଦର, ଏତେ ଗୁଣର ଝିଅ। ପାଠ ପଢ଼ିଛି। ମାଉସୀଙ୍କୁ ପଚାରିବି। ସପନି ସାଙ୍ଗରେ ବି କଥା ହେବି। ସପନି ଯଦି ରାଜି ନ ହୁଏ, ତାକୁ କହିବି ଟଙ୍କାମୁଣାକୁ ବାହା ହବ। ମୁଁ ସପନି ସାଙ୍ଗେ କଥା ହୁଏ। ମୋ ମନ କହୁଛି, ଏ ବାହାଘର ହବ।

ମାଣିକ- ତୋ ତୁଣ୍ଡ ସୁତୁଣ୍ଡ ହଉରେ ପୁଅ। ମୁଁ ତୋ ବାଟକୁ ଅନେଇ ରହିଲି।

ରମା ଆଉ ସପନିର ବାହାଘର ହେଲା। ଚଉଠି ରାତିରେ ସପନି ରମାକୁ ପଚାରିଲା, ''କାହାର ଜିତାପଟ ହେଲା?'' ରମା କହିଲା, ''କାହାର ଆଉ, ଦି'ଜଣଙ୍କର ହେଲା।''